# ମୁଁ ବିଜ୍ଞାନ କହୁଛି

ଲେଖିକା
**ଡକ୍ଟର ଜ୍ୟୋତିର୍ମୟୀ ମହାନ୍ତି**

ପ୍ରକାଶକ
**ଶ୍ରୀ ବିଜୟ ଶଙ୍କର ପାତ୍ର**
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦ ବିହାରୀ, କଟକ- ୭୫୩ ୦୦୨

ପ୍ରଥମ ପ୍ରକାଶ - **୨୦୦୬**

ଛାପା ସଂଖ୍ୟା - **୫୦୦**

ପ୍ରଚ୍ଛଦ : **ଶଶିକାନ୍ତ ରାଉତ**

ଟାଇପ୍ ସେଟ୍ : ବ୍ଲେଜ୍, ବିଡ଼ାନାସୀ, କଟକ-୧୪

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ୍, କଟକ-୧

**MU BIGYANA KAHUCHHI**

*By*
**Dr. Jyotirmayee Mohanty**

*Published by*
**Shree Bijoy Shankar Patra**
**ORISSA BOOK STORE**
Binod Behari,
Cuttack-753 002

**Price : Rs. 30/–**

ISBN 81-7400-453-X

1st Edition **-2006**

# ବହି ବିଷୟରେ ପଦେ

ପିଲାଟିଏ । ତା ଚାରିପାଖକୁ ବୁଝିଲା ଭଳି ହେଲେ ତା ମନରେ ଅନେକ ପ୍ରଶ୍ନ ଉଙ୍କିମାରେ । ତା ନିତିଦିନିଆ ଜୀବନରେ ସେମିତି ଅନେକ ଘଟଣା ଘଟିଯାଏ । ଯାହାକୁ ଦେଖି ସେ ଭାବେ ଏମିତି କାହିଁକି ହେଲା ? କେମିତି ହେଲା ଓ କ'ଣ ପାଇଁ ହେଲା ? ଇତ୍ୟାଦି । ପିଲାଟିର ନିଜ ଶରୀର ଭିତରେ କ'ଣ ହୁଏ, ସପନ କାହିଁକି ଆସେ, ଆମେ ରୋଗରେ କାହିଁକି ପଡୁ, ଏତେ ଉଚା ଗଛକୁ ପାରି କେମିତି ଉଠେ, ସୂର୍ଯ୍ୟ ପୁଣି ପଶ୍ଚିମରେ କିପରି ଉଦୟ ହୁଏ ଏମିତି ଅନେକ କ'ଣ, କାହିଁକି ମୂଳରେ ଥିବା ବୈଜ୍ଞାନିକ ସତ୍ୟତାକୁ କାହାଣୀ ଛଳରେ ମୁଁ ଏହି ପୁସ୍ତକରେ ଉପସ୍ଥାପିତ କରିଛି ।

ସଦା ଚଞ୍ଚଳ ଶିଶୁ ହେଉଛି ଗଳ୍ପପ୍ରିୟ । ତେଣୁ ଗଳ୍ପ ଛଳରେ କେତେକ ବିଜ୍ଞାନ ସମ୍ବନ୍ଧୀୟ ସତ୍ୟତାକୁ ସରଳ, ତରଳ କରି ପରଶି ଦେଇଛି ମୁଁ ଏହି ପୁସ୍ତକରେ । କାହାଣୀଟି ପାଠ କରି ଆମୋଦିତ ହେବା ସହ ବିଜ୍ଞାନର ଜଟିଳ ତତ୍ତ୍ୱକୁ ସରଳ ଭାବେ ଶିଶୁଟି ଉପଲବ୍ଧ କରିପାରିଲେ ମୋର ଶ୍ରମ ସାର୍ଥକ ହେବ । ଏଥିରେ ସନ୍ନିବେଶିତ ପ୍ରତିଟି କାହାଣୀ ପିଲାଙ୍କ ପ୍ରିୟ ପତ୍ରିକା ମୀନାବଜାର, ସଂସାର, ନନ୍ଦନକାନନ, ଝୁମୁକା, ସମାଜର ଶିଶୁରାଇଜ, ସମୟ ଓ ପ୍ରଜାତନ୍ତ୍ରର ଶିଶୁ ପୃଷ୍ଠାରେ ପ୍ରକାଶିତ ଓ ପ୍ରଶଂସିତ ମଧ । ପୁସ୍ତକ ପ୍ରକାଶନ ଅବସରରେ ସେହି ସଂପାଦକଙ୍କ ସହ ଏହାର ପ୍ରକାଶ ଦାୟିତ୍ୱ ବହନ କରିଥିବା ବିଜୟ ବାବୁଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ।

ବାଗସାହି
ଜଗତ୍‌ସିଂହପୁର - ୭୫୪୧୦୩

ଡକ୍ଟର ଜ୍ୟୋତିର୍ମୟୀ ମହାନ୍ତି

# ସୂଚୀପତ୍ର





# ଶବ୍ଦର ଖେଳ - ଆମର କାଳ



ସେ ଦିନଟି ଥିଲା ରବିବାର । ଟେଲିଭିଜନରେ ଏକ ଓଡ଼ିଆ ଚଳଚ୍ଚିତ୍ର ଚାଲିଥାଏ । ଘରର ସମସ୍ତେ ମନ ଖୁସିରେ ବସି ଏହାକୁ ଦେଖୁଥିଲେ । ହେଲେ କୁମୁଲି ମନ ସିନେମା ଦେଖାରେ ଲାଗୁ ନଥାଏ । ସେ ଭାବୁଥାଏ ତାକୁ କିଏ ଟିକିଏ ମେଡ଼ିକାଲ ନେଇ ଯାଆନ୍ତା କି ? କୁମୁଲିର ସାଙ୍ଗ ରିଙ୍କା ଓ ତା'ର ପରିବାରର ସମସ୍ତେ ମେଡ଼ିକାଲରେ ପଡ଼ିଛନ୍ତି । ସେମାନେ ତାଙ୍କ ନିଜ କାର୍‌ରେ ପୁରୀରୁ ଫେରୁଥିଲେ । କଟକ ଆଉ ଅଳ୍ପ ବାଟ ଥିଲା । କାର୍‌ଟି ଏକ ଗଛ ଦେହରେ ବାଡ଼େଇ ହୋଇଗଲା । ସମସ୍ତେ ଖଣ୍ଡିଆ ଖାବରା । ଡ୍ରାଇଭରର ମୁଣ୍ଡ ଫାଟିଯାଇଛି । ତା' ସାନ ଭାଇଟି ଦେହ ଖୁବ୍ ଖରାପ । ମଉସା, ମାଉସୀଙ୍କର ମଧ୍ୟ ମୁଣ୍ଡ ଓ ଗୋଡ଼ରେ ଆଘାତ ଲାଗିଛି । ବିଚରା କେତେ ଖୁସିରେ ସମୁଦ୍ରକୂଳ ବୁଲି ବଡ଼ ଠାକୁରଙ୍କୁ ଦର୍ଶନ କରି ଫେରୁଥିଲେ । ମାତ୍ର ସେ ଖୁସି ତାଙ୍କର ରହିଲା ନାହିଁ । ଡ୍ରାଇଭର ସହ ସମସ୍ତେ

ମେଡ଼ିକାଲରେ ପଡ଼ିଛନ୍ତି । କାହାର ଗୋଡ଼ରେ ବ୍ୟାଣ୍ଡେଜ୍ ବନ୍ଧା ହୋଇଛି ତ, କାହା ହାତ ବନ୍ଧା ହୋଇଛି । ଏପରି ବେଳରେ ରିଙ୍କାକୁ ଟିକିଏ ଦେଖି ନ ଆସିଲେ ଭଲ ହେବ ନାହିଁ ।

ମାତ୍ର ବାବା ତ ଟୁର୍‌ରେ ଯାଇଛନ୍ତି । ଫେରୁ ଫେରୁ ଆହୁରି ତିନି ଚାରିଦିନ ଡେରି । ଭାଇ ତ ଶୁଣୁନାହାନ୍ତି । ସେ କିପରି ଯିବ ? ଏତିକିବେଳେ ଦେଖିଲା ଦାଦା ପ୍ୟାଣ୍ଟସାର୍ଟ ପିନ୍ଧି ବାହାରକୁ ଯିବାପାଇଁ ସ୍କୁଟର ବାହାର କରୁଛନ୍ତି । ସେ ଦାଦାଙ୍କ ପାଖକୁ ଦୌଡ଼ିଗଲା ଏବଂ କହିଲା, ''ଦାଦା, ଦାଦା, ତୁମେ କୁଆଡ଼େ ଯାଉଛ ? ମତେ ଟିକିଏ ମେଡ଼ିକାଲ ପର୍ଯ୍ୟନ୍ତ ନେଇଯାଅ । ମୁଁ ରିଙ୍କାକୁ ଟିକିଏ ଦେଖିବାକୁ ଯିବି । ଜାଣିଛ ନା, ତା ଦେହ ଭଲ ନାହିଁ ।''

''ହଉ ତେବେ ଶୀଘ୍ର ଆସ । ମୁଁ ତତେ ମେଡ଼ିକାଲରେ ଛାଡ଼ି ଷ୍ଟାଡ଼ିୟମ୍ ପର୍ଯ୍ୟନ୍ତ ଯିବି, ସେଠାରୁ ଫେରିଲାବେଳେ ତତେ ନେଇ ଆସିବି ।''



ମେଡ଼ିକାଲରେ କୁମୁଲୀକୁ ଦେଖି ରିଙ୍କା ବହୁତ କାନ୍ଦିଲା । କହିଲା, ଆମର ଭାଗ୍ୟ ଖରାପ । ଦେଖିଲୁ, ବାବା, ମା, ମୁଁ, ରିକୁ ସମସ୍ତେ କିପରି ପଡ଼ିଛୁ । ଡାକ୍ତର କହୁଛନ୍ତି ଆହୁରି ଆଠଦିନ ରହିବୁ । ରିକୁ ଦେହ ବହୁତ ଖରାପ ଅଛି । କୁମୁଲି ବୁଝାଇ କହିଲା, ଶୀଘ୍ର ଭଲ ହୋଇ ଫେରିବୁ । ଅଯଥାରେ କାନ୍ଦିକରି ମନ ଦୁଃଖ କର ନାହିଁ । ହେଲେ ତୁମମାନଙ୍କର ଏମିତି କ'ଣ ହେଲା ଯେ !



ତୁ ଜାଣିଛୁନା କୁମୁଲି, ଆମ ଡ୍ରାଇଭର କହୁଛି ଯେ ଗାଡ଼ି ଆଗରେ ଗୋଟିଏ କିଏ ଛିଡ଼ା ହୋଇଗଲା । ଭୂତ କି ପ୍ରେତ କିଏ ଗୋଟାଏ । ତାକୁ ଦେଖି ସେ ବହୁତ ଡରିଗଲା ଓ ତାର ମୁଣ୍ଡ ଭିତରଟା କିପରି ଗୋଳମାଳିଆ ହୋଇଗଲା । ଫଳରେ ଭାରସାମ୍ୟ ରଖି ନ ପାରି ସେ ଗାଡ଼ିକୁ ଗଛରେ ପିଟି ଦେଲା ।

ହେଲେ ସେ ଭୂତ ହେଉ ବା ପ୍ରେତ ହେଉ ସେଠାକୁ କେମିତି ଆସିଲା ?

ଏହା ପୂର୍ବରୁ ଆମ ମାଉସୀଙ୍କ ଗାଡ଼ି ମଧ୍ୟ ଏହି ଜାଗାରେ ଦୁର୍ଘଟଣା ଘଟାଇଥିଲା । ମାଉସୀ କହୁଥିଲେ ଯେ ଏଠାରେ ଏମିତି ଏମିତି ଅନେକ ଗାଡ଼ି ଧକ୍କା ହୁଏ । ବହୁଦିନ ତଳେ ସେଠାରେ ଦୁର୍ଘଟଣାରେ ଏକ ପିଲା ମରିଯାଇଥିଲା । ପିଲାଟିର ମା ତାଙ୍କ ପିଲାକୁ ଝୁରି ଝୁରି ମଧ୍ୟ ମରିଗଲେ । ସେ ମରିବା ପରେ ସବୁଦିନ ରାତିରେ ସେ ଏହି ଜାଗାରେ ଛିଡ଼ାହୋଇ ତାଙ୍କ ପୁଅକୁ ଖୋଜନ୍ତି । ଅନେକ ସେ ପ୍ରେତକୁ ଦେଖିଛନ୍ତି । ସେଇଥିପାଇଁ ଠିକ୍ ଏହି ସ୍ଥାନରେ ବହୁତ ଦୁର୍ଘଟଣା ଘଟେ । ଡ୍ରାଇଭରମାନେ ଗାଡ଼ି ଆଗରେ ଏକ ମଣିଷ ଛାଇ ଦେଖି ଡରିଯାଆନ୍ତି । ଭୟରେ ଗାଡ଼ି ଠିକ୍ ଭାବରେ ଚଳାଇ ପାରନ୍ତି ନାହିଁ । ଏଣେତେଣେ ବାଡ଼େଇ ଦିଅନ୍ତି । ମାତ୍ର ମାଉସୀଙ୍କ ଡ୍ରାଇଭର କହୁଥିଲା ଯେ ସେ କିଛି ଦେଖିନାହିଁ । ସେହି ଜାଗାରେ ହଠାତ୍ ତା ମୁଣ୍ଡ ଭିତରଟା କିପରି ଗୋଳମାଳିଆ ହୋଇଗଲା, ଆଉ ଗାଡ଼ିକୁ ଗଛରେ ପିଟିଦେଲା । ମାତ୍ର ମାଉସୀ କୁହନ୍ତି ଯେ ଏସବୁ ସେ ବଦ୍‌ମାସ ପ୍ରେତର କାମ ।

ସବୁ ଶୁଣି କୁମୁଲି ବି ମନେ ମନେ ଖୁବ୍ ଡରିଗଲା । କିଛି ସମୟ ପରେ ଦାଦା ଫେରି ଆସିଲେ ଓ ସେ ତାଙ୍କ ସହ ଘରକୁ ଆସିଲା । ସେତେବେଳକୁ ସଂଧ୍ୟା ହୋଇଯାଇଥିଲା ।

ସହରରେ ଲୋକ ଚଳାଚଳ ଟିକିଏ କମିଯାଇଥିଲା । ରାସ୍ତାକଡ଼ରେ ଥିବା ବିଜୁଳିବତୀ ଗୁଡ଼ିକ ଜଳି ଉଠିଥିଲା । କୁମୁଲିର କିନ୍ତୁ ସେହି ପ୍ରେତ କଥା ବାରମ୍ବାର ମନେ ପଡୁଥିଲା ଓ ତାକୁ ବହୁତ ଡର ଲାଗୁଥିଲା । ସେ ଭୟରେ ଦାଦାଙ୍କୁ କୁଣ୍ଢାଇ ଧରିଥାଏ ।

ଗାଡ଼ି ଚଳାଉ ଚଳାଉ ଦାଦା କହିଲେ, ''କ'ଣ କିରେ କୁମୁଲି, ତୁ ଏପରି କାହିଁ ହେଉଛୁ ? ମତେ ଏପରି ମାଡ଼ି ବସି କାହିଁ ଧରିଛୁ ?''

ଦାଦା, ମତେ ଭାରି ଡର ଲାଗୁଛି ।

କାହିଁକି କିରେ ?

ରିଙ୍କାଠାରୁ ଶୁଣିଥିବା ପ୍ରେତକଥା ଦାଦାଙ୍କ ଆଗରେ କହିଗଲା କୁମୁଲି ।

ସବୁ ଶୁଣି ଅଳ୍ପ ହସି ଦାଦା କହିଲେ,''ଏସବୁ ମନଗଢ଼ା କାହାଣୀ । ଭୂତ ପ୍ରେତ ସବୁ ମନର ଭୟ । ପ୍ରକୃତରେ ଏମାନେ କେହିନାହାନ୍ତି ।''

-''ତାହାହେଲେ କାହିଁ ସେଠାରେ ଏତେ ଦୁର୍ଘଟଣା ଘଟୁଛି ? ସେ ଯେଉଁ ପ୍ରେତ ଛିଡ଼ା ହେଉଛି ସେ ପୁଣି କ'ଣ ? ତାକୁ ତ କେତେ ଲୋକ ଦେଖିଛନ୍ତି । ତମେ କ'ଣ କହୁଛ ନା ଏସବୁ ମିଛ କଥା ।''

ଆଚ୍ଛା, ତୁ ଘରକୁ ଚାଲ । ଏ ବିଷୟରେ ମୁଁ ତତେ ଭଲ ଭାବରେ ବୁଝାଇ ଦେବି । ଏମିତି କଥାବାର୍ତ୍ତା ମଝିରେ ସେମାନେ ଘର ନିକଟରେ ପହଞ୍ଚିଗଲେ । କୁମୁଲିର ତ ମନ ଲାଗିଛି । ଖାଇସାରି ସେ ଦାଦାଙ୍କ ପାଖରେ ବସିଗଲା । କହିଲା, - ''କୁହନା ଦାଦା ସେ ପ୍ରେତ କାହିଁ ସେଠାରେ ଏପରି କରୁଛି ।''



-''ଶୁଣ୍, ପ୍ରେତ ବୋଲି ସେଠାକୁ ପ୍ରକୃତରେ କେହି ଆସନ୍ତି ନାହିଁ । ଏହା ଲୋକମାନଙ୍କ ମନର ଭୁଲ ଧାରଣା । ଏହାମୂଳରେ ଏକ ବୈଜ୍ଞାନିକ ସତ୍ୟ ଅଛି । ତାହା ମୁଁ ଏବେ ତୋତେ ବୁଝାଇ ଦେଉଛି । ଏହା ହେଉଛି ଏକ ପ୍ରକାର ଅଦ୍ଭୁତ ଶବ୍ଦ ଶକ୍ତିର କରାମତି । ଛାଇ ଆଲୁଅର ଖେଳ ହେଉ ବା ଅନ୍ୟ କୌଣସି କାରଣ ଯୋଗୁଁ ହେଉ ଏହି ସ୍ଥାନଟିରେ ଏକ ପ୍ରକାର ଅଦ୍ଭୁତ ଶବ୍ଦ ଶକ୍ତି ଜାତ ହୁଏ । ଏହି ଶବ୍ଦ ଶକ୍ତିର ଏପରି କରାମତି ଅଛି ଯେ ଏହା ଚାଳକମାନଙ୍କର ମୁଣ୍ଡ ଭିତରକୁ ଏକ ପ୍ରକାର ଗୋଳମାଳିଆ କରିଦିଏ । ଫଳରେ ସେମାନେ ଭାରସାମ୍ୟ ହରାଇ ବସନ୍ତି ଓ ଗାଡ଼ି ଉପରେ ତାଙ୍କର ଆଉ ନିୟନ୍ତ୍ରଣ ରହେ ନାହିଁ । ତେଣୁ ଗାଡ଼ି ଦୁର୍ଘଟଣା ଘଟାଏ, ଯାହାକୁ ସେମାନେ ପ୍ରେତାତ୍ମା ବୋଲି ଶେଷରେ କହିବସନ୍ତି ।''

-''ସତରେ ଦାଦା ଏହା ଭିତରେ ଏତେ କଥା ଅଛି ନା ? ରିଜାର କଥା ଶୁଣି ମୁଁ ତ ପୂରାପୂରି ଡରିଯାଇଥିଲି ।''

-''ତାହେଲେ ଏବେ ଆଉ ଡରିବୁ ନାହିଁ । ହଁ ଶୁଣ୍, ଏହାକୁ କୁହାଯାଏ ଇନ୍‌ଫ୍ରା-ସାଉଣ୍ଡ । ଆମ ବୈଜ୍ଞାନିକମାନେ ଅନୁମାନ କରନ୍ତି ଯେ କେବଳ ସ୍ଥଳଭାଗ ନୁହେଁ, ଜଳଭାଗରେ ମଧ୍ୟ ଏହି ଅଦୃଶ୍ୟ ଶକ୍ତି ନାନା ପ୍ରକାର ଦୁର୍ଘଟଣା ଘଟାଇଥାଏ । ଏହା ଉପରେ ଅଧିକରୁ ଅଧିକ ଗବେଷଣା କରାଗଲେ ଆହୁରି ନୂଆ ନୂଆ କଥା ବାହାରି ପାରନ୍ତା ଓ ଲୋକମାନଙ୍କ ମନରୁ ଏ ଅନ୍ଧ ବିଶ୍ୱାସ ମଧ୍ୟ ଦୂର ହୋଇପାରନ୍ତା । ତା ଛଡ଼ା ଏସବୁ ଦୁର୍ଘଟଣା ଓ କ୍ଷୟକ୍ଷତିକୁ ମଧ୍ୟ ଏଡ଼ାଇଯାଇ ପାରନ୍ତା । ତମେ ସବୁ ବିଜ୍ଞାନ ଯୁଗର ପିଲା । ପିଲାଟି ଦିନରୁ ଏ ସବୁକୁ ଲକ୍ଷ୍ୟ କର । ତାହାହେଲେ ତା'ର ସମାଧାନ କରିପାରିବ ।



# ଚଢ଼େଇ ରୋଗ ଆଣେ ଉଢ଼େଇ



ଚିକୁର ମାମୁ ସମ୍ବଲପୁର ଠାରେ ଚାକିରି କରନ୍ତି । ସମ୍ବଲପୁର ବୁଲିଯିବା ପାଇଁ ଚିକୁ ଅନେକ ଦିନଠାରୁ ମନ କରିଥିଲା । ବିରାଟ ହୀରାକୁଦ ବନ୍ଧ ଜଳଭଣ୍ଡାର, ତା' ଦୁଇପାଖରେ ଥିବା ଜହର ମିନାର, ଗାନ୍ଧୀ ମିନାର ଏସବୁ କଥା ମାମୁଙ୍କଠାରୁ ଶୁଣି ଶୁଣି ଦେଖିବାକୁ ତା'ର ଭାରି ଇଚ୍ଛା ହେଉଥିଲା । ଏ ବର୍ଷ ବଡ଼ ଦିନ ଛୁଟିରେ ମାମୁଁ ତାକୁ ସାଙ୍ଗରେ ସମ୍ବଲପୁର ନେଇଗଲେ । ସେଠାରେ ଏବେ ସେ ଆଠଦିନ ରହି ସବୁ ବୁଲିକରି ଦେଖିବ । ସେଥିପାଇଁ ତା' ମନ ବଡ଼ ଖୁସି ।

ସେଦିନ ମାମୁ ଶୀଘ୍ର ଅଫିସରୁ ଚାଲି ଆସିଲେ । କହିଲେ, ଚିକୁ ଆଜି ହୀରାକୁଦ ଯିବା । ବନ୍ଧ ଓ ଜଳଭଣ୍ଡାର ସହ ତୁ ଆଉ ଏକ ସୁନ୍ଦର ଦୃଶ୍ୟ ଦେଖିବୁ । ଏଇ ଶୀତ ଋତୁର ଆରମ୍ଭରେ ସାଇବେରିଆ, କାସ୍ପିଆନ, ବୈକାଲ ହ୍ରଦ ଓ ଲାଦାଖ ପ୍ରଭୃତି ଅଞ୍ଚଳରୁ ବହୁ ପକ୍ଷୀ ଉଡ଼ି ଉଡ଼ି ଏଠାକୁ ଆସିଛନ୍ତି, ସେମାନଙ୍କୁ ଦେଖିବୁ ।



ଯଥାସମୟରେ ଚିକୁ ମାମୁଁଙ୍କ ସହ ହୀରାକୁଦ ଜଳଭଣ୍ଡାର ନିକଟରେ ପହଞ୍ଚିଗଲା । ଆଖି ପାଉ ନଥିବା ଭଳି ଜଳଭଣ୍ଡାରକୁ ଚାହିଁ ସେ ଆଶ୍ଚର୍ଯ୍ୟ ହୋଇଗଲା । ସତରେ ଏହି ଜଳଭଣ୍ଡାର ମଧ୍ୟରେ ଥିବା ବଡ଼ ବଡ଼ ଗଛ, ପାଣି ଘେରରେ ରହିଥିବା ମନ୍ଦିର ଚୂଡ଼ା ଇତ୍ୟାଦିରେ ଶହ ଶହ ବିଦେଶାଗତ ପକ୍ଷୀ ଆଶ୍ରୟ ନେଇଛନ୍ତି ।

ଦିନର ଖରା ସେତେବେଳକୁ ମଉଳି ଆସୁଥିଲା । ସେମାନେ ପାଣି ଘେରରୁ ବାହାରି କୂଳ ଆଡ଼କୁ ଆସୁଥିଲେ । ମାମୁ ସେମାନଙ୍କୁ ଚିହ୍ନାଇ ଦେଇ କହିଲେ, ହେଇ ଦେଖ୍ ଏମାନଙ୍କ ମଧ୍ୟରେ ଅଛନ୍ତି ସାରସ, ପାତିହଂସ, ବତକ, ଚିଲ, ମୋରାଣ୍ଡସ, କୋଟସ୍ ଆଦି ନାନା ଜାତିର ପକ୍ଷୀ । ତାଙ୍କ ରହଣି ସ୍ଥଳରେ ପ୍ରବଳ ଥଣ୍ଡା ହେତୁ ହଜାର ହଜାର କିଲୋମିଟର ଦୂରରୁ ହିମାଳୟ ଡେଇଁ ଏମାନେ କେମିତି ଚାଲି ଆସିଛନ୍ତି ।

''ସତରେ ମାମୁ, ଏତେ ଗୁଡ଼ିଏ ପକ୍ଷୀ ମୁଁ କେବେ ଦେଖି ନଥିଲି । କେତେ ସୁନ୍ଦର ଦେଖାଯାଉଛି ଏ ସ୍ଥାନ । ହେଲେ ମାମୁଁ ଆମ ବିଜ୍ଞାନ ସାର୍ କହୁଥିଲେ କେତେକ ସଂକ୍ରାମକ ରୋଗର ଜୀବାଣୁ ଏହି ପକ୍ଷୀମାନଙ୍କ ଦ୍ୱାରା ମଣିଷ ଶରୀରକୁ ପ୍ରବେଶ କରନ୍ତି । ଏହା କ'ଣ ସତ କଥା ?''

-''ହଁରେ ଚିକୁ, ଏହା ସତ କଥା । ହେଲେ ବହୁଲୋକ ଏକଥା ବିଶ୍ୱାସ କରିପାରନ୍ତି ନାହିଁ ଯେ ଏହି ସୁନ୍ଦର ସୁନ୍ଦର ପକ୍ଷୀମାନେ ଇନ୍‌ଫ୍ଲୁଏନଜା, ଡେଙ୍ଗୁଜ୍ୱର, ମସ୍ତିଷ୍କଜ୍ୱର ଇତ୍ୟାଦି ନାନା ସଂକ୍ରାମକ ରୋଗ ବ୍ୟାପିବାରେ ସାହାଯ୍ୟ କରନ୍ତି । ମାତ୍ର ପକ୍ଷୀତତ୍ତ୍ୱବିତ୍‌ମାନେ ଏହି ମତ ପ୍ରକାଶ କରିଛନ୍ତି ।''

ବନ୍ଧ ଉପରେ ମାମୁ ବସିପଡ଼ିଲେ ଓ ଚିକୁକୁ ତାଙ୍କ ନିକଟରେ ବସାଇଦେଲେ । ଦୂର ଆକାଶକୁ ନାଲି ରଙ୍ଗରେ ରଙ୍ଗାଇ ଦେଇ ସୂର୍ଯ୍ୟଦେବତା ମା' କୋଳକୁ ଯିବାକୁ ପ୍ରସ୍ତୁତ ହେଉଥିଲେ । ତଳେ ଜଳଭଣ୍ଡାରର ପାଣି ବି ଲାଲ ଦିଶୁଥିଲା । ଅଳ୍ପ ଅଳ୍ପ ଶୀତ ଲାଗୁଥିଲା । ଚିକୁର ମନ ଏ ଦୃଶ୍ୟକୁ ଛାଡ଼ି ପକ୍ଷୀମାନଙ୍କ ଦ୍ୱାରା କିପରି ରୋଗ ବ୍ୟାପେ ସେ ବିଷୟ ଜାଣିବାକୁ ଚାହୁଁଥିଲା । ତେଣୁ ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲା, ''ମାମୁ ଦୂର ଆକାଶ

କୋଳରେ ଡେଣା ହଲାଇ ବୁଲୁଥିବା ଏହି ପକ୍ଷୀମାନେ ରୋଗ କିପରି ବୁଣି ଦିଅନ୍ତି ମତେ ତ୍ ଏକଥା ବିଶ୍ୱାସ ଲାଗୁନାହିଁ । ''

-''ତୁ ତ ଜାଣିଥିବୁ ରୋଗର ମୂଳ ହେଉଛି ଜୀବାଣୁ । କେତେକ ପ୍ରକାର ଜୀବାଣୁ ଅଛନ୍ତି ଯେଉଁମାନେ କି ପକ୍ଷୀମାନଙ୍କ ଦେହରେ ରହି ସେମାନଙ୍କ ଶରୀରରୁ ଖାଦ୍ୟ ଗ୍ରହଣ କରି ନିଜ ନିଜର ବଂଶ ବୃଦ୍ଧି କରନ୍ତି । ମଶା, ଟିଙ୍କ ଓ ଉକୁଣୀ ଆଦି ସନ୍ଧିପଦ ପ୍ରାଣୀମାନେ ଏହି ପକ୍ଷୀମାନଙ୍କୁ କାମୁଡ଼ିଲେ ସେ ରୋଗ ଜୀବାଣୁଗୁଡ଼ିକ ଏମାନଙ୍କ ଦେହକୁ ଚାଲିଆସନ୍ତି । ଏମାନେ ପୁଣି ମଣିଷମାନଙ୍କୁ କାମୁଡ଼ିଲା ବେଳେ ସେ ରୋଗ ଜୀବାଣୁ ମଣିଷଙ୍କ ଦେହକୁ ଚାଲିଯାଆନ୍ତି । ତୁ ମସ୍ତିଷ୍କଜ୍ୱର ବୋଲି ଏକ ସାଙ୍ଘାତିକ ରୋଗ ବିଷୟରେ ଶୁଣିଥିବୁ । ତାହାର ଜୀବାଣୁ  ଏହି ପକ୍ଷୀମାନଙ୍କ ଦ୍ୱାରା ବ୍ୟାପି ଥାଆନ୍ତି । ଯେଉଁ ଅଞ୍ଚଳରେ ସ୍ଥାୟୀ ଭାବରେ ଦେଖାଯାଏ ସେଠାରୁ ଏହି ପକ୍ଷୀମାନଙ୍କ ଦ୍ୱାରା ଏହା ଅନ୍ୟ ଅଞ୍ଚଳକୁ ଆସିଥାଏ । ପୁନେସ୍ଥିତ ଜାତୀୟ ଗବେଷଣାଗାରର ବୈଜ୍ଞାନିକମାନେ ଏହା ପ୍ରମାଣ କରିଛନ୍ତି । ସାଧାରଣ ଲୋକ ହୁଏତ ଏକଥା ବିଶ୍ୱାସ କରି ନ ପାରନ୍ତି । ମାତ୍ର ଏହା ସତକଥା ।''

ଆକାଶ କୋଳରେ ଉଡ଼ି ବୁଲୁଥିବା ପକ୍ଷୀଙ୍କୁ ଥରେ ମଝିରେ ଚାହିଁ ଦେଇ ଚିକୁ ମାମୁଙ୍କ ମୁହଁକୁ ଅନାଇ ଏସବୁ ଆଶ୍ଚର୍ଯ୍ୟ କଥାମାନ ଶୁଣୁଥାଏ ।

-''ତାହାହେଲେ ବୈଜ୍ଞାନିକମାନେ ଏକଥା ପ୍ରମାଣ କରିଛନ୍ତି ?''

ପଚାରିଲା ଚିକୁ ।

-''ହଁ, ୧୯୫୫ରେ ଆମର କେତେକ ବୈଜ୍ଞାନିକ ମଣିଷ ଦେହରେ ଓ ମହୀଶୂରର ଜଙ୍ଗଲରେ ଦେଖାଯାଉଥିବା ଏକ ପ୍ରକାର ମାଙ୍କଡ଼ମାନଙ୍କ ଦେହରେ ଗୋଟିଏ ପ୍ରକାର ରକ୍ତସ୍ରାବଜନିତ ଜ୍ୱରର ଭୂତାଣୁ ଆବିଷ୍କାର କଲେ । ଦେଖାଗଲା ଯେ ଏହା ଏକ ପ୍ରକାର ଟିଙ୍କମାନଙ୍କ ଦ୍ୱାରା ସଂକ୍ରମିତ ହୋଇଛି । ଶେଷରେ କ'ଣ ଜଣାଗଲା ଜାଣିଛୁ, ସାଇବେରିଆରୁ ଯେଉଁ ବଗମାନେ ଆସୁନାହାନ୍ତି ସେହିମାନଙ୍କ ଦେହରେ ଏହି ଟିଙ୍କ ଗୁଡ଼ିକ ଆମ ଦେଶକୁ ଆସିଛନ୍ତି । ମସ୍କୋର ପକ୍ଷୀତତ୍ତ୍ୱବିତ୍‌ମାନେ କହନ୍ତି ଯେ  ବଣ୍ଟିଙ୍ଗସ୍, ରବିନ୍ ପରି ଗାୟକ ପକ୍ଷୀମାନଙ୍କ ଦ୍ୱାରା ମଧ୍ୟ ଟିଙ୍କମାନେ ଆସନ୍ତି । ଖାଲି କ'ଣ ଆମ ଦେଶର ବୈଜ୍ଞାନିକ, ବିଦେଶର ବୈଜ୍ଞାନିକମାନେ ମଧ୍ୟ ଏହାକୁ ପ୍ରମାଣ କରିଛନ୍ତି । ଜାଣିଛୁନା, ଖୁବ୍ ନିକଟରେ ଜାପାନର ପ୍ରଫେସର ହେମୋକିତି ପ୍ରମାଣ କରି ଦେଖାଇଛନ୍ତି ଯେ  ଏକ ପ୍ରକାର ଜୀବାଣୁ ବଣୁଆ ପାତିହଂସ ବସାଥିବା ଅଞ୍ଚଳରେ ବହୁ ପରିମାଣରେ ଦେଖାଯାଆନ୍ତି । ଏମାନେ ବଣୁଆ ପାତିହଂସ ଦେହରୁ ଗୃହପାଳିତ ପାତିହଂସ ଦେହକୁ ଚାଲିଆସନ୍ତି । ପରିଶେଷରେ ମଣିଷ ଦେହକୁ ଆସି ନାନା ରୋଗ ସୃଷ୍ଟି କରନ୍ତି । ପ୍ରଫେସର ହେମୋକିତି ଉତ୍ତର ଆମେରିକାରେ ଦେଖାଯାଉଥିବା ବଣୁଆ ପାତିହଂସ ଦେହରେ ପ୍ରାୟ ଶହେ ପ୍ରକାରର ଜୀବାଣୁ ଚିହ୍ନଟ କରିଛନ୍ତି ।''



-''ଏହି ଜୀବାଣୁମାନେ ତାହାହେଲେ ସତରେ ପକ୍ଷୀମାନଙ୍କ ଦ୍ୱାରା ଆମ ଦେହକୁ ଚାଲିଆସନ୍ତି । ଏହା ତ ମତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ।'' କହିଲା ଚିକୁ ।

-''ଆଶ୍ଚର୍ଯ୍ୟ ଲାଗିଲେ ବି ଏହା ସତକଥାରେ ଚିକୁ । ଆହୁରି ଶୁଣ ୧୯୩୩ରେ ଅଷ୍ଟ୍ରେଲିଆର ବୈଜ୍ଞାନିକ ଡ଼ଃ ଡି. ମେରି ଅଷ୍ଟ୍ରେଲିଆର ଉତ୍ତରାଂଶରେ ଥିବା କୁକୁଡ଼ାମାନଙ୍କ ଦେହରେ ଡେଙ୍ଗୁ ଜ୍ୱରକୁ ଚିହ୍ନଟ କରିଥିଲେ । ଏହି ରୋଗ କୁକୁଡ଼ାମାନଙ୍କଠାରୁ ମଶାମାନଙ୍କ ମାଧମରେ ମଣିଷ ଦେହକୁ ବ୍ୟାପିଗଲା । ଏହାଛଡ଼ା ଏକପ୍ରକାର ନିମୋନିଆ ପାରାମାନଙ୍କ ଦ୍ୱାରା ମଣିଷ ଦେହକୁ ବ୍ୟାପିବାର ପ୍ରମାଣ ହୋଇଛି । ତୁ ଗାଙ୍ଗଚିଲ ବୋଲି ଏକ ପ୍ରକାର ପକ୍ଷୀ ଜାଣିଛୁ ନା ?

-''ହଁ ମାମୁ । ଏମାନେ ବୋଧହୁଏ ସାମୁଦ୍ରିକ ପକ୍ଷୀ ଅଟନ୍ତି ।''

-''ହଁ ଠିକ୍ କହିଛୁ । ଏମାନେ ମୁଖ୍ୟତଃ ନର୍ଦ୍ଦମାର ପଚାଜଳ, ଅଳିଆ ଆବର୍ଜ୍ଜନା ଇତ୍ୟାଦି ଖାଇ ଜୀବନ ଧାରଣ କରନ୍ତି । ଏମାନେ ଘାସ ପଡ଼ିଆରେ ମଳତ୍ୟାଗ କରନ୍ତି । ଏହି ମଳରେ ଅନେକ ରୋଗ ଜୀବାଣୁ ଥାଆନ୍ତି । ଗାଈମାନେ ପଡ଼ିଆରେ ଚରିଲେ ତାହା ଗାଈମାନଙ୍କ ଦେହକୁ ଯାଏ । ତା'ଛଡ଼ା ବର୍ଷା ହେଲେ ଏହି ମଳ ବର୍ଷାଜଳ ଦ୍ୱାରା ଧୋଇ ହୋଇ ଜଳାଶୟରେ ମିଶେ ଓ ଜଳକୁ ପ୍ରଦୂଷଣ କରେ । ସେହି ଜଳକୁ ବ୍ୟବହାର କରୁଥିବା ପ୍ରାଣୀମାନେ ନାନା ରୋଗରେ ପଡ଼ନ୍ତି । ଏକଥା ଲଣ୍ଡନର କେତେକ ବୈଜ୍ଞାନିକ ପ୍ରମାଣ କରିଛନ୍ତି ।''

-"ଆଚ୍ଛା ମାମୁ, ଏ ବିଷୟରେ ତ ସାଧାରଣ ଲୋକମାନେ ଜାଣି ନାହାନ୍ତି । ଏହାର ପ୍ରତିକାର ପାଇଁ ପୁଣି କି ବ୍ୟବସ୍ଥା କରିବାକୁ ପଡ଼ିବ ।"

-"ହଁ, ଆମର ପକ୍ଷୀତତ୍ତ୍ୱବିଦ୍ ଓ ଜୀବାଣୁ ତତ୍ତ୍ୱବିଦ୍‌ମାନେ ଏହା ଉପରେ ଆହୁରି ଅଧିକ ଅଧିକ ଗବେଷଣା କରିବା ଉଚିତ । ସେମାନେ ପକ୍ଷୀମାନଙ୍କ ସହ ଜୀବାଣୁମାନଙ୍କ ସମ୍ପର୍କ ଓ କିପରି ଏ ସଂକ୍ରାମକ ରୋଗ ନ ବ୍ୟାପିବ ତା ବିଷୟରେ ଜନସାଧାରଣଙ୍କୁ ଜଣାଇବା କଥା । ତାହାହେଲେ ହୁଏତ ଏଥିପ୍ରତି ସାଧାରଣ ଲୋକ ସଚେତନ ହେବେ । ଏତକ କହି ଚାରିପଟକୁ ଅନାଇ ମାମୁଁ ଦେଖିଲେ ଶୀତଦିନର କୁହୁଡ଼ିଆ ଅନ୍ଧାର ଅନେକ ବେଳୁ ଘୋଟିଗଲାଣି । ଶୀତ ମଧ ଲାଗିଲାଣି । ଚାରିଆଡ଼ ଉଜ୍ଜ୍ୱଳ ବିଜୁଳି ଆଲୋକରେ ଝଲସି ଉଠିଲାଣି । କହିଲେ-ଚିକୁ, ଚାଲ ଯିବା, ମାଇଁ ଅପେକ୍ଷା କରିଥିବେ । ଆଉ ଦିନେ ଦିନରୁ ଆସିଲେ ଗାନ୍ଧୀ ମିନାର ଓ ଜହର ମିନାର ବୁଲି ଦେଖିବା ।"



# ଆଲୁମିନିୟମର ଜନ୍ମକଥା

ଅନେକ ଦିନ ତଳର କଥା । ଏକ ଶ୍ରେଣୀ ଗୃହରେ ପାଠ ପଢ଼ା ଚାଲିଥାଏ । ପ୍ରଫେସର ରସାୟନ ବିଜ୍ଞାନ ପଢ଼ାଉଥାଆନ୍ତି । ବିଷୟବସ୍ତୁ ଥିଲା ଆଲୁମିନିୟମ୍ ଧାତୁ । ଏହି ଧାତୁଟି ବିଷୟରେ ପିଲାଙ୍କୁ କିଛି ପଢ଼ାଇସାରି ଶେଷରେ ପ୍ରଫେସର କହିଲେ, ''ଆମ ଭୂପୃଷ୍ଠର କାଦୁଅରେ ପ୍ରଚୁର ପରିମାଣରେ ଏହି ଧାତୁ ରହିଅଛି, ମାତ୍ର ଦୁଃଖର ବିଷୟ ଯେ ଆମ ବୈଜ୍ଞାନିକମାନେ ଏହି ଧାତୁକୁ କାଦୁଅରୁ ନିଷ୍କାସନ ପାଇଁ କୌଣସି ଉପାୟ ଏପର୍ଯ୍ୟନ୍ତ ପାଇପାରିନାହାନ୍ତି । ତୁମ ଭିତରୁ ଯିଏ ଏହାକୁ ବାହାରକରିଦେବ, ସେ ଦିନେ ବିଶ୍ୱବିଖ୍ୟାତ ହୋଇଯିବ । କାରଣ ଏହି ଧାତୁ ଖୁବ୍ ମୂଲ୍ୟବାନ ।''



ଏହା ପ୍ରାୟ ଦୁଇଶହ ବର୍ଷ ତଳର ଘଟଣା । ସେତେବେଳେ ଏହି ଆଲୁମିନିୟମ ବା ତୁମେ ଯାହାକୁ କହୁଛ ରସ ତାହା ସୁନା, ରୂପା ପ୍ରଭୃତି ଧାତୁପରି ମୂଲ୍ୟବାନ ଥିଲା । ପାଠପଢ଼ା ସରିଲା, ପ୍ରଫେସର ଶ୍ରେଣୀ ଗୃହ ଛାଡ଼ି ଚାଲିଗଲେ ଓ ଅନ୍ୟପିଲାମାନେ ମଧ୍ୟ ଚାଲିଗଲେ । ମାତ୍ର ଜଣେ ପିଲା ସେଠାରେ କିଛି ସମୟ ବସି ରହିଲା ଓ ପ୍ରଫେସରଙ୍କ କଥାକୁ ଗଭୀର ଭାବେ ଚିନ୍ତାକଲା । କାହିଁକି କେଜାଣି ପ୍ରଫେସରଙ୍କ କଥା ତା' ମନରେ ଗଭୀରରେଖାପାତ କଲା ଓ ଆଲୁମିନିୟମ ଧାତୁର ନିଷ୍କାସନ ଲାଗି ସେ ମନେ ମନେ ଶପଥ ନେଲା । ପିଲାଟିର ନାମ ହଲ୍ । କୌଣସି କାର୍ଯ୍ୟ କରିବାକୁ ମନରେ ଦୃଢ଼ ନିଷ୍ଠା ଥିଲେ ଏହା ନିଶ୍ଚୟ ସଫଳ ହୁଏ ।

ହଲ୍‌ର ଦୃଢ଼ନିଷ୍ଠା ତାକୁ ସଫଳତାର ପଥରେ ଆଗେଇ ନେଲା । ସେ ଏହା ଉପରେ ଗବେଷଣା କରିବାକୁ ଲାଗିଲେ । ୧୮୨୭ ଖ୍ରୀଷ୍ଟାବ୍ଦରେ ତରଳ କ୍ରାୟୋଲାଇଟ୍‌ରେ ଦ୍ରବୀଭୂତ ଆଲୁମିନିୟମ ଅକ୍‌ସାଇଡ଼୍‌ରୁ ବିଦ୍ୟୁତ ବିଶ୍ଳେଷଣ ଦ୍ୱାରା ଏହି ଧାତୁ ମିଳିଯିବ ବୋଲି ସେ ପରୀକ୍ଷା ଦ୍ୱାରା ପ୍ରମାଣ କରିଦେଲେ । ହଲ୍‌ଙ୍କର ଏହି ନୂତନ ଆବିଷ୍କାର ସତରେ ତାକୁ ବିଶ୍ୱବିଖ୍ୟାତ କଲା । ସେ ଆନନ୍ଦରେ ଗଦ୍‌ଗଦ୍ ହୋଇ ତାଙ୍କ ପ୍ରଫେସରଙ୍କ ପାଖକୁ ଗଲେ । ଏହାପରେ ବୈଜ୍ଞାନିକମାନେ କାଦୁଅରୁ ଆଲୁମିନିୟମ ପାଇବାର ବାଟପାଇଗଲେ ଓ ଏହା ଖୁବ ଶସ୍ତା ଧାତୁରେ ପରିଣତ ହେଲା ।

ଏହା ପୂର୍ବରୁ ଏହି ଧାତୁଟି ଏତେ ମୂଲ୍ୟବାନ ଥିଲା ଯେ ଏହାକୁ କେବଳ ରାଜାମହାରାଜାମାନେ ବ୍ୟବହାର କରୁଥିଲେ । ଚୀନ୍ ଦେଶର ରାଜା ଏକଦା ତାଙ୍କର ଜଣେ ବିଶିଷ୍ଟ ଅତିଥିଙ୍କୁ ଏହି ଆଲୁମିନିୟମ ବାସନରେ ଖାଇବାକୁ ଦେଇଥିଲେ । ଏହା ହୁଏତ ଶୁଣିଲେ ପିଲାଏ ତୁମକୁ ଆଶ୍ଚର୍ଯ୍ୟ ଲାଗିବ । କାରଣ ଆଜି ଏହି ଧାତୁଟି ଏତେ ଶସ୍ତା ହୋଇଯାଇଛି ଯେ ଭିକାରିଟିଏ ଏହି ବାସନଧରି ଭିକ୍ଷାମାଗୁଛି । ବୈଜ୍ଞାନିକ ହଲ୍‌ଙ୍କ ଆବିଷ୍କାର ଫଳରେ ତୁମକୁ ଯାଦୁ ବିଦ୍ୟାପରି ମନେହେଉଥିବା ଏହି କଥା ସତ୍ୟରେ ପରିଣତ ହୋଇଛି । ଏହି ଆବିଷ୍କାର ପାଇଁ ବୈଜ୍ଞାନିକ ହଲ୍ ମରି ମଧ୍ୟ ଅମର ।

ଆଲୁମିନିୟମ ପ୍ରକୃତିରେ ମୁକ୍ତ ଭାବରେ ମିଳେ ନାହିଁ । ମାତ୍ର ଏହା ଯୌଗିକ ଅବସ୍ଥାରେ କାଦୁଅ, ସ୍ଲେଟ ଇତ୍ୟାଦିରେ ବହୁଳଭାବେ ପରିଦୃଷ୍ଟ ହୁଏ । ଶତକଡ଼ା ଆଠ

ଅଂଶଭାବେ ଏହା ଭୂତ୍ୱକରେ ପରିଦୃଷ୍ଟ ହୁଏ । ଏହି ଧାତୁଟି ଖୁବ୍ ଶସ୍ତା ହୋଇଥିବାରୁ ଏଥିରେ ବିଭିନ୍ନ ପ୍ରକାର ରୋଷେଇ ସରଞ୍ଜାମ, ଉଡ଼ାଜାହାଜ, ରେଳଡ଼ବା, ମୋଟର ଯାନ ଓ ଇଲେକ୍‌ଟ୍ରିକ୍ ତାର ଇତ୍ୟାଦି ତିଆରି କରାଯାଏ । ବିଭିନ୍ନ ଔଷଧକୁ ବହୁଦିନ ସାଇତି ରଖିବାପାଇଁ ସେଗୁଡ଼ିକ ପତଳା ଆଲୁମିନିୟମ ଖୋଳରେ ମଧ୍ୟ ରଖାଯାଏ ।

ପିଲାମାନେ, ଏ ଦୁନିଆରେ ଅନେକ ତଥ୍ୟ ଏମିତି ଲୋକଲୋଚନର ଆଢୁଆଳରେ ରହିଯାଇଛି । ହଲ୍‌ଙ୍କ ପରି ପାଠ ପଢ଼ିଲାବେଳଠାରୁ ନୂଆ ନୂଆ ତଥ୍ୟ ଆବିଷ୍କାର ପାଇଁ ମନେ ମନେ ଶପଥ ନିଅ । ତାହାହେଲେ ନିଶ୍ଚୟ ଦିନେ ହଲ୍‌ଙ୍କ ପରି ବଡ଼ମଣିଷ ହେବ ।



# ମୁଁ ଅମ୍ଳଜାନ କହୁଛି

ଖଟ୍..... ଖଟ୍..... ଖଟ୍..... ।

ଚେଇଁ ଉଠିଲା ଫୁସ୍‌ଫୁସ୍ । କିଏ ଡ଼ାକୁଛି କେଜାଣି ।

-"ମୁଁ ଆସିଛି ।" କହିଲା ଅମ୍ଳଜାନ ।

-"ତୁମେ କିପରି ମୋ ଭିତରକୁ ଆସିଲ ?" ପଚାରିଲା ଫୁସ୍‌ଫୁସ୍ ।



-"ବାହାରର ବାୟୁମଣ୍ଡଳରେ ଖେଳୁ ଖେଳୁ ନାକ, ଗଳକକ୍ଷ, ଶ୍ୱାସନଳୀ ଓ ଶ୍ଳେଷ୍ମନଳୀ ଦେଇ ମୁଁ ତୁମ ଭିତରକୁ ପଶିଆସିଲି । ସିଧା ଆସି ପହଞ୍ଚିଗଲି ତୁମ ବାୟୁକୋଠରୀ ବା କୋଟରିକା ନିକଟରେ । ଶ୍ଳେଷ୍ମ ନଳୀଟି ଅତି ସୂକ୍ଷ୍ମ ନଳୀରେ ପରିଣତ ହେଲାପରେ ତା'ରି ଅଗ୍ରଭାଗରେ ତିଆରି ହୋଇଛି ଛୋଟିଆ ଏକ କୋଠରୀ ଯାହାର ନାମ କୋଟରିକା । ସତେ ଯେପରି ପ୍ରକୃତି ତୁମ ଭିତରେ ଏଇ ଘରଟି ମୋ ପାଇଁ ଗଢ଼ି ଦେଇଛି ।"

-"ତୁମେ ଏବେ କୁଆଡ଼େ ଯିବ ?"

-''ତୁମର ଏହି ବାୟୁକୋଠରୀ ଉପରେ ସୂକ୍ଷ୍ମ ରକ୍ତନାଳୀଟିଏ ପ୍ରବାହିତ ହୋଇଛି । ଏହି ରକ୍ତନାଳୀ ରକ୍ତରେ ଭରପୂର ହୋଇଥାଏ । ରକ୍ତରେ ଲୋହିତ ରକ୍ତ କଣିକା ନାମକ ଏକ ପଦାର୍ଥ ଅଛି । ଏହି ଲୋହିତ ରକ୍ତ କଣିକାରେ ଥାଏ ହିମୋଗ୍ଲୋବିନ୍ । ହିମୋଗ୍ଲୋବିନ୍ ମତେ ଖୁବ୍ ଭଲପାଏ । ଦେଖିଲା ମାତ୍ରେ ମତେ ଆଦରରେ ଟାଣି ନେଇଯାଏ ତା' ନିକଟକୁ । ତେଣୁ ତୁମ ବାୟୁକୋଠରୀ କୋଟରିକାରୁ ସେ ମତେ ଟାଣିନେଇ ଅକ୍ସିହିମୋଗ୍ଲୋବିନ୍ ଗଠନ କରେ । ତା' ପରିବର୍ତ୍ତେ ତା' ନିକଟରେ ଥିବା ଅଙ୍ଗାରକାମ୍ଳକୁ ସେ ଠେଲିଦିଏ ତୁମ କୋଟରିକା ନିକଟକୁ ।''

-''ତମେ ଭାଇ ଅମ୍ଳଜାନ ବଢ଼ିଆ ମଜାରେ ବାହାରୁ ଆସି ଆମ ରକ୍ତ ସହ ମିଶିଗଲ । ହଁ, ତା'ପରେ କୁଆଡ଼େ ଯାଅ ?''

-''ତୁମେ ତ ଜାଣିଥିବ ମନୁଷ୍ୟ ଦେହଯାକ ଅସଂଖ୍ୟ ନଳୀ ଓ ସେମାନଙ୍କର ଶାଖାପ୍ରଶାଖା ଜାଲ ବିଛାଇଲା ଭଳି ବିଛା ହୋଇରହିଛି । ଏହି ନଳୀଗୁଡ଼ିକ ନଈ ପାଣିରେ ବୋଝେଇ ହେଲାପରି ରକ୍ତରେ ବୋଝେଇ ହୋଇଥାଆନ୍ତି । ତା ଭିତରୁ କେତେକ ଶରୀରକୁ ରକ୍ତ ଯୋଗାଇ ଦିଅନ୍ତି ଆଉ କେତେକ ଶରୀରରୁ ବାହାରୁଥିବା ଦୂଷିତ ପଦାର୍ଥକୁ ଧରି ଅଳିଆ ରକ୍ତ ରୂପରେ ତୁମ ନିକଟକୁ ଆସନ୍ତି । ଜାଣିଛନା ଆମ ବୈଜ୍ଞାନିକମାନେ ହିସାବ କରି ଦେଖିଛନ୍ତି ଯେ ପ୍ରାୟ ୯୬୦୦-୧୬୦,୦୦୦ କିଲୋମିଟର ଲମ୍ବ ବିଶିଷ୍ଟ ନଳୀ ଆମ ଦେହରେ ବିଛେଇ ହୋଇ ରହିଛି । ମୁଁ ରକ୍ତ ସହ ମିଶିଯିବା ପରେ ତୁମ ରକ୍ତ ବିଶୁଦ୍ଧ ହୋଇଯାଏ । ଏହି ବିଶୁଦ୍ଧ ରକ୍ତ ମତେ ବହନ କରି ନଈର ଏକ ଧାର ପରି ମନ ଆନନ୍ଦରେ ବହିଚାଲେ ଜୀବକୋଷ ନିକଟକୁ । ମାତ୍ର ଜାଣନା ମୁଁ ତୁମର ସବୁ ନଳୀ ମଧ୍ୟଦେଇ ଯାଏ ନାହିଁ । ମୁଁ ଯେଉଁ ସବୁ ନଳୀ ଦେଇ ଯାଏ ସେଗୁଡ଼ିକୁ କୁହାଯାଏ ଧମନୀ ।

-''ଜୀବକୋଷ ? ସେ ପୁଣି କିଏ ?''

-'' ଏହି ଜୀବକୋଷ ଗୁଡ଼ିକ ପରା ମଣିଷ ଶରୀରର ମୌଳିକ ସୂକ୍ଷ୍ମାଂଶ । ଯେମିତି ଛୋଟ ଛୋଟ ଇଟାକୁ ନେଇ ବିରାଟ କାନ୍ଥ ମୁଣ୍ଡ ଟେକିଉଠିଛି, ସେମିତି ଏହି ଟିକି ଜୀବକୋଷର ସମଷ୍ଟିରେ ଗଢ଼ା ମଣିଷର ଶରୀର । ଏହା ଶରୀର କାନ୍ଥର ଇଟା, ସମଗ୍ର ଶରୀରର ପ୍ରାଣକେନ୍ଦ୍ର । ଏମାନେ ଶରୀର ପାଇଁ ଅନବରତ କାମକରି ଚାଲିଥାଆନ୍ତି । ନାନା ରାସାୟନିକ ପ୍ରକ୍ରିୟାମାନ ଅହରହ ଏହା ମଧ୍ୟରେ ଚାଲିଥାଏ । ଫଳରେ ଏହା ଭିତରେ କିଛି ଅଳିଆ ଜମିଯାଏ । ଏହି ଅଳିଆର ମୁଖ୍ୟ ଅଂଶ ହେଉଛି ଅଙ୍ଗାରକାମ୍ଳ । ମୁଁ ଏମାନଙ୍କ ନିକଟରେ ପହଞ୍ଚିଲା ମାତ୍ରେ ଏମାନେ ମତେ ତାଙ୍କ ଭିତରକୁ ଆଦରରେ ଟାଣିନେଇ ଅଳିଆ କରୁଥିବା ଅଙ୍ଗାରକାମ୍ଳକୁ ଠେଲି ଦିଅନ୍ତି ରକ୍ତ ମଧ୍ୟକୁ । ଏମାନେ ଅଲଗା ଏକ ନଳୀ ଦେଇ ଫେରନ୍ତି । ଅଙ୍ଗାରକାମ୍ଳକୁ ବହନ କଲାପରେ ରକ୍ତ ଦୂଷିତ ହୋଇଯାଏ । ଦୂଷିତ ରକ୍ତକୁ ବହନକରି ଯେଉଁ ନାଳୀଗୁଡ଼ିକ ଆଣନ୍ତି ନା ସେମାନଙ୍କୁ କୁହାଯାଏ ଶିରା । ସବୁ ଶିରାମାନେ ଏକାଠି ହୋଇ ଦୁଇଟି ବଡ଼ ଶିରାରେ ଆସି ହୃତପିଣ୍ଡର ଦକ୍ଷିଣପଟେ ପହଞ୍ଚିଯାଆନ୍ତି । ବିଚରା ଏ ଅଳିଆ

ରକ୍ତକୁ ଦେଖି ହୃତପିଣ୍ଡ ଭାଇ ବ୍ୟସ୍ତ ହୋଇଉଠେ । ଏମାନଙ୍କୁ ରଖିବା ବିପଦ ତେଣୁ ସେ ତାକୁ ସଫା କରି ତୁମ ପାଖକୁ ପଠାଇ ଦିଏ । ତେଣୁ ସେମାନେ ପୁଣି ଚାଲି ଆସନ୍ତି ତୁମ କୋଟରିକା ଭିତରକୁ । ତୁମର ସେ କୋଟରିକାଟି ଶରୀର ପାଇଁ ଏଠାରେ ଗୋଟିଏ ବଡ଼ କାମ କରେ । ମତେ ରକ୍ତ ମଧକୁ ଠେଲି ସେହି ଦୂଷିତ ଅଙ୍ଗାରକାମ୍ଳକୁ ନିଜେ ଗ୍ରହଣ କରିନିଏ । ଶିବଙ୍କ ପରି ସେ ଏ ବିଷ ଅଙ୍ଗାରକାମ୍ଳକୁ ପାନକରେ । ତୁମ ଦେହଟାଯାକ ଯେତେବେଳେ ଅଙ୍ଗାରକାମ୍ଳରେ ବୋଝେଇ ହୋଇଯାଏ ତୁମେ ଭୀଷଣ ବିରକ୍ତ ହୋଇଉଠ । ନା କଣ ଫୁସ୍‌ଫୁସ୍ ଭାଇ ?''

''ହଁ ତା ତ ସତକଥା । ଏହି ଅଙ୍ଗାରକାମ୍ଳ ଅଧିକ ହେଲେ ପରା ମୁଁ ବ୍ୟତିବ୍ୟସ୍ତ ହୋଇଉଠେ । ଏମାନଙ୍କୁ ତଡ଼ିବା ପାଇଁ କିଛି ଉପାୟ ଚିନ୍ତାକରେ । ବିରକ୍ତ ହୋଇ ମୁଁ ନିଜକୁ ସଙ୍କୁଚିତ କରିବା ଫଳରେ ମୋ କୋଟରିକା ମଧରୁ ଏମାନେ ନିଃଶ୍ୱାସ ବାଟ ଦେଇ ବାହାରକୁ ଚାଲିଯାଆନ୍ତି, ଏଥରକ ଯାଇ ରକ୍ଷା । ହେଲେ ତୁମେ ଦେହ ଭିତରେ ରହି କର କଣ ?'' ପଚାରିଲା ଫୁସ୍‌ଫୁସ୍ ।

-''ଜୀବକୋଷ ମୋ ସାହାଯ୍ୟରେ ଖାଦ୍ୟର ଦହନ ଘଟାଏ । ଏହା ଫଳରେ ଶରୀର ବଳ ଓ ତାପଶକ୍ତି ପାଏ । କାମଟି ମୋର ଛୋଟିଆ ବୋଲି ଭାବିବ ନାହିଁ । ଏଇ କାମଟି ଟିକିଏ ବନ୍ଦ ହୋଇଗଲେ ନା ଶରୀର ତୁମର ପୂରା ଅଚଳ ହୋଇଯିବ । ଶ୍ୱାସକ୍ରିୟାରେ ମୋର ପରିମାଣ କମିଗଲେ ତୁମେ ନାନା ପ୍ରକାର ବ୍ୟାଧିରେ ଆକ୍ରାନ୍ତ ହେବ । ତୁମେ ଜାଣନି କି ମୋ ବିନା ତୁମ ଶରୀର ଏକ ମିନିଟ୍ ମଧ ବଞ୍ଚିପାରିବ ନାହିଁ । ସେଥିପାଇଁ ମଣିଷ ଭାଇ ଯେତେବେଳେ ସମୁଦ୍ରର ଗଭୀର ଜଳରେ ବୁଡି କିଛି କାର୍ଯ୍ୟ କରେ, ଯେତେବେଳେ ଗ୍ରହ ଗ୍ରହାନ୍ତର ରହସ୍ୟ ଭେଦ ପାଇଁ ମହାଶୂନ୍ୟରେ ଘୂରି ବୁଲେ ତାହା ସହ ମୁଁ ସାଥୀ ହୋଇଥାଏ । 'ଅମ୍ଳଜାନ ଥଳୀ' ନାମରେ ସେ ମୋତେ ଆଗ ନିଏ ।''

-''ତେଣୁ ତୁମକୁ ଯେକୌଣସିମତେ ମୋ ଭିତରେକୁ ଛାଡ଼ିବା ମଣିଷ ଭାଇର ପ୍ରଧାନ କାମ ହେବା ଉଚିତ'' କହିଲା ଫୁସ୍‌ଫୁସ୍ ।

-''ହଁ ମୁଁ ସାଧାରଣତଃ ନଈକୂଳିଆ ଖୋଲାଜାଗା, ସବୁଜ ଗଛଲତା ଭରା ଅଞ୍ଚଳ, ଝରଣା ଓ ପାହାଡ଼ମାନ ଥିବା ସ୍ଥାନମାନଙ୍କରେ ଭରପୂର ଅବସ୍ଥାରେ ରହିଥାଏ, ତେଣୁ ସଦାସର୍ବଦା ଖୋଲାଜାଗାରେ ଚଳପ୍ରଚଳ ହେଲେ ମୁଁ ତୁମ ଭିତରକୁ ଅଧିକ ପରିମାଣରେ ପ୍ରବେଶ କରିବି । ମତେ ଅଧିକ ପରିମାଣରେ ପାଇବା ପାଇଁ ବୃକ୍ଷରୋପଣ ହିଁ ହେଉଛି ଏକ ପ୍ରଧାନ ପନ୍ଥା । କାରଣ ଗଛରେ ଥିବା ଅସଂଖ୍ୟ ପତ୍ର ଦିନବେଳେ ସୂର୍ଯ୍ୟକିରଣରେ ତାଙ୍କ ରୋଷେଇ କରିବା ବେଳେ ମତେ ବାୟୁମଣ୍ଡଳକୁ ପରିତ୍ୟାଗ କରନ୍ତି ।''

ମୁଁ ଅଧିକ ଭାବରେ ତୁମ ଭିତରକୁ ଗଲେ ମଣିଷ ଭାଇର ଦେହ ସୁସ୍ଥ ଓ ନୀରୋଗ ରହିବା ସହ ମନ ପ୍ରଫୁଲ୍ଲ ରହିବ । ଖୁସିମନରେ ସେ ଅଧିକ କାର୍ଯ୍ୟକ୍ଷମ ହେବ ।'' ଏତକ କହି ଅମ୍ଳଜାନ ଟିକିଏ ଚୁପ୍ ହୋଇଗଲା ।



# ଆୟୋଡିନ୍‌ର କାହାଣୀ

ଆମ୍ବ ସମୟ । ବାବୁଲି ଭାଇଙ୍କ ପୋଖରୀ ହୁଡ଼ାରେ ଥିବା ଆମ୍ବଗଛଟି ଆମ୍ବ ଭାରାରେ ନଇଁପଡୁଛି । ଟଗଲା ସ୍କୁଲ ପିଲାଏ ଖେଳଛୁଟିରେ ଚାଲିଯାଆନ୍ତି ଆମ୍ବଗଛ ନିକଟକୁ । ଟେକାମାରି କିଛି ଆମ୍ବ ଝଡ଼ାନ୍ତି । ତାକୁ ଲୁଣ ଓ କଞ୍ଚାଲଙ୍କା ଦେଇ ଖାଆନ୍ତି । ସ୍କୁଲର ଶିକ୍ଷକମାନଙ୍କ ଠାରୁ ଯେତେ ବେତ ପାହାର ଖାଇଲେ ବି ଏ କାମଟା ତାଙ୍କର ନିତିଦିନ ଚାଲେ । ସେଦିନ ଆମ୍ବ କାଟି ଖାଉ ଖାଉ ବୁଟୁନ୍‌ର ହାତ କଟିଗଲା । ରକ୍ତ ଧାର ଧାର ବହିଲା । ଡରରେ ପିଲାମାନେ ତାକୁ ଧରି ସ୍କୁଲର ପ୍ରାଥମିକ ଚିକିତ୍ସା ଦାୟିତ୍ୱରେ ଥିବା ମଞ୍ଜୁଦିଦିଙ୍କ ପାଖରେ ପହଞ୍ଚିଲେ । ମଞ୍ଜୁଦିଦି ତା' ରକ୍ତ ପୋଛାପୋଛି କରି ତୁଳାରେ ଭିଜାଇ କିଛି ଟିଙ୍କ୍‌ଚର ଆୟୋଡ଼ିନ ମାରିଦେଲେ ଓ ଖଣ୍ଡିଆ ସ୍ଥାନକୁ ଗଜ୍ କପଡ଼ାରେ ବାନ୍ଧିଦେଲେ ।



ରକ୍ତଧାର ବନ୍ଦ ହୋଇଯିବାରୁ ଦିଦି ମାରିଥିବା ସେହି ବାଇଗଣି ରଙ୍ଗର ଔଷଧ ଉପରେ ବୁଟୁନ୍‌ର ଆଖି ଲାଖି ରହିଲା । ଚଗଲା ହେଲେ ବି ସବୁ ଜିନିଷ ଜାଣିବାରେ ତା'ର ବହୁତ ଆଗ୍ରହ । ବାବାଙ୍କୁ ତ ଏକଥା ପଚାରିଲେ ଖଣ୍ଡିଆ ପାଇଁ ପ୍ରଥମେ ତାକୁ ଗାଳି ଶୁଣିବାକୁ ପଡ଼ିବ । ଭାବିଲା ଆଜି ତ ଶନିବାର, ରାତିକୁ ଦାଦା ଆସିଲେ ଏକଥା ପଚାରିବ ।

ଦାଦା ଦେଖୁ ଦେଖୁ କହିଲେ, ''ଏହି ଔଷଧର ନାମ ହେଉଛି ଟିଙ୍କଚର ଆୟୋଡ଼ିନ୍ ।''

-''ଆୟୋଡ଼ିନ୍, ହଁ ଏହା ବିଷୟରେ ଆମ ବହିରେ ଅଛି ଅଛି । ଟିକେ କୁହନା ଦାଦା ଏହା କେଉଁଠୁ ଆସିଲା ପୁଣି ଏଥିରୁ ଔଷଧ କିପରି ତିଆରି ହେଲା ?''

ଦାଦା ଦେଖିଲେ ପିଲାଟି ମନର ଆଗ୍ରହକୁ ଭାଙ୍ଗିଦେବା ଉଚିତ ନୁହେଁ । ତାକୁ ବସାଇ ସେ ଆରମ୍ଭ କଲେ ଆୟୋଡ଼ିନ୍‌ର କାହାଣୀ ।

ଫରାସୀ ରସାୟନବିତ୍ ବର୍ଣ୍ଣାଡ୍ କୋର୍ଟସି ଏହାକୁ ୧୮୧୧ ମସିହାରେ ଆବିଷ୍କାର କରିଥିଲେ । ମାତ୍ର ବାସ୍ତବରେ ଏହି ନୂତନ ମୌଳିକ ପଦାର୍ଥକୁ ଆବିଷ୍କାର କରିବାରେ ସେ ଆଗ୍ରହୀ ନଥିଲେ । ବାରୁଦ ପାଇଁ ଦରକାର ହେଉଥିବା ପୋଟାସିୟମ୍ ନାଇଟ୍ରେଟ୍ ପ୍ରସ୍ତୁତ ପାଇଁ ସେ ବ୍ୟସ୍ତ ଥିଲେ । ସେ ପୋଟାସିୟମ୍ କାର୍ବୋନେଟରୁ ଏହି ପୋଟାସିୟମ୍ ନାଇଟ୍ରେଟ୍ ପାଉଥିଲେ । ଏହି ପୋଟାସିୟମ୍ କାର୍ବୋନେଟ୍‌କୁ ସେ ସମୁଦ୍ର ଜଳରୁ ପାଇଥିଲେ । ଏହାକୁ ପାଇବାକୁ ହେଲେ ସମୁଦ୍ର ଜଳକୁ ସେ ପ୍ରଥମେ ଏସିଡ୍ ସାହାଯ୍ୟରେ ଗରମ କରନ୍ତି । ୧୮୧୧ ମସିହାରେ ଦିନେ ଏହାକୁ ଗରମ କରୁଥିବା ଅବସ୍ଥାରେ ସେ ବହୁତ ଏସିଡ୍ ଢ଼ାଳିଦେଲେ ଯାହା ଫଳରେ ଏକ ସୁନ୍ଦର ବାଇଗଣି ରଙ୍ଗର ଧୂଆଁ ବାହାରିଲା । ଆଶ୍ଚର୍ଯ୍ୟ ହୋଇ ସେ ଏହାକୁ ଥଣ୍ଡା କଲେ । ସେଥିରୁ ବାଇଗଣି ରଙ୍ଗର ସ୍ଫଟିକାକାର ଖଣ୍ଡମାନ ମିଳିଲା । ବାସ୍ତବରେ ଏହି ଖଣ୍ଡ ଗୁଡ଼ିକ ହିଁ ଥିଲା ଆୟୋଡ଼ିନ୍ । କୋର୍ଟସି ଏକ ଅଦ୍ଭୁତ ଉପାୟରେ ହିଁ ଏହି ନୂଆ ଧାତୁଟିକୁ ଆବିଷ୍କାର କଲେ । ମାତ୍ର ତିନି ବର୍ଷ ପରେ ବୈଜ୍ଞାନିକ ଡେ଼ଭିଙ୍କ ଦ୍ୱାରା ଏହାର ନାମକରଣ ହେଲା ଆୟୋଡ଼ିନ୍ । ଗ୍ରୀକ୍ ଭାଷାରେ 'ଆୟୋଡ଼େସ୍'ମାନେ ବାଇଗଣି । ତେଣୁ ଏହାର ସୁନ୍ଦର ବାଇଗଣି ରଙ୍ଗରୁ ଏହାର ନାମ ହେଲା ଆୟୋଡ଼ିନ୍ । କୋର୍ଟସିଙ୍କ ପଦ୍ଧତିରେ ସମୁଦ୍ର ଜଳକୁ ଗରମ କରି ଏହାକୁ ଉତ୍ପନ୍ନ କରାଯାଉଥିଲା ।

-''ଦାଦା, ଏହା କ'ଣ ଆମ ଶରୀର ପାଇଁ ଦରକାର ?''

-''ହଁ, ବହୁତ ପରିମାଣରେ ଆୟୋଡ଼ିନ୍ ଶରୀର ପକ୍ଷେ କ୍ଷତିକାରକ ହେଲେ ମଧ୍ୟ ଅଳ୍ପ ପରିମାଣର ଆୟୋଡ଼ିନ୍‌ର ଶରୀର ପକ୍ଷେ ଉପଯୋଗିତା ଅଛି । ଆମ ଶରୀର ପାଇଁ ଅନେକ ପ୍ରକାର ଧାତବ ଲବଣ ଆବଶ୍ୟକ । ସେହି ଧାତବ ଲବଣ ମଧ୍ୟରେ ଆୟୋଡ଼ିନ୍

ଅନ୍ୟତମ । ଥାଇରୋକ୍ସିନ ନାମକ ହରମୋନ୍ ତିଆରି କରିବା ପାଇଁ ଥାଇରୋଏଡ୍ ଗ୍ଲାଣ୍ଡରେ ଏହାର ଆବଶ୍ୟକତା ରହିଛି । ଏହାର ଅଭାବରେ ଗଳଗଣ୍ଡ ରୋଗ ହୁଏ । ସମୁଦ୍ର ମାଛ ଓ ତଟକା ପନିପରିବାରୁ ଆମ ଶରୀର ଏହି ଆୟୋଡ଼ିନ୍ ପାଇଥାଏ । ଜଣେ ବୟସ୍କ ଲୋକ ପାଇଁ ପ୍ରାୟ ପ୍ରତ୍ୟହ ୧୫୦ ମାଇକ୍ରୋଗ୍ରାମ୍ ପରିମାଣର ଆୟୋଡ଼ିନ୍ ଆବଶ୍ୟକତା ରହିଛି, ଯାହା ମଧ୍ୟରୁ କି ଥାଇରଏଡ୍ ଗ୍ଲାଣ୍ଡ ପ୍ରାୟ ୭୦ ମାଇକ୍ରୋଗ୍ରାମ୍ ଆୟୋଡ଼ିନ୍ ବ୍ୟବହାର କରିନିଏ ।

ତୋ ହାତରେ ଦିଦି ଯେଉଁ ଆୟୋଡ଼ିନ୍ ଔଷଧ ଲଗାଇ ଦେଲେ ତାହା ହେଉଛି ଟିଙ୍କ୍‌ଚର ଆୟୋଡ଼ିନ୍ । ଏହାକୁ ସାଧାରଣତଃ ଖଣ୍ଡିଆ ପ୍ରଭୃତିରେ ଲଗାଇଦେଲେ ଇନ୍‌ଫେକ୍‌ସନ ହେବାର ଭୟ ନଥାଏ । ଏଥିରେ ଶତକଡ଼ା ୨ଭାଗ ଆୟୋଡ଼ିନ୍, ଶତକଡ଼ା ୨.୪ଭାଗ ସୋଡ଼ିୟମ ଆୟୋଡ଼ାଇଡ୍. ଶତକଡ଼ା ୪୭ଭାଗ ଇଥାଇଲ୍ ଆଲକହଲ ଓ ଅବଶିଷ୍ଟ ଜଳ ଥାଏ । ଏହାଛଡ଼ା ଆଉ ଏକ ପ୍ରକାର ଟିଙ୍କ୍‌ଚର ଆୟୋଡ଼ିନ୍ ଅଛି ଯାହାକି ଖୁବ୍ କଡ଼ା ଓ ବିଷାକ୍ତ । ଏହା ମଣିଷକୁ ମାରିଦେବ । ଏଥିରେ ଶତକଡ଼ା ୭ଭାଗ ଆୟୋଡ଼ିନ୍, ୫ଭାଗ ପୋଟାସିୟମ୍ ଆୟୋଡ଼ାଇଡ୍, ୮୩ଭାଗ ଇଥାଇଲ ଆଲକହଲ୍ ଓ ଅବଶିଷ୍ଟ ଜଳ ଥାଏ ।

-''ଆଚ୍ଛା ଦାଦା, ଆୟୋଡ଼ିନ୍ ତ ବୁଝାଇଲେ ଏବେ ଏହା ସହ ଯେଉଁ ଟିଙ୍କ୍‌ଚର ଶବ୍ଦଟା କହୁଛ ତା'ର ଅର୍ଥ କ'ଣ ?''

ଦାଦା ଟିକିଏ ହସିଦେଲେ ଓ କହିଲେ ଏହି ଟିଙ୍କ୍‌ଚର ଶବ୍ଦଟି ଲାଟିନ୍ 'ଟଙ୍କ୍‌ଚୁରା' ଶବ୍ଦରୁ ଆସିଛି ଯାହାର ଅର୍ଥ ହେଉଛି ମୃତ୍ୟୁ । ଏହାର ଅଧିକ ହିଁ ମୃତ୍ୟୁକୁ ଡ଼ାକି ଆଣିଥାଏ । ତୁ ଜାଣୁନା ଏହି ଆୟୋଡ଼ିନ୍‌ର ଏକ ସ୍ୱତନ୍ତ୍ର ଧରଣର ରଙ୍ଗ, ଗନ୍ଧ ଓ ସ୍ୱାଦ ଅଛି । ଏହାର ଧୂଆଁ ପ୍ରତି ଚର୍ମ ଓ ଆଖି ଏକପ୍ରକାର ପ୍ରତିକ୍ରିୟା ଦେଖାଏ । ଅଧିକ ପରିମାଣରେ ଆୟୋଡ଼ିନ୍ ଧୂଆଁ ଆଖିରୁ ଲୁହ ନିଗାଡ଼ି ଦେବ, ଛାତି ରୁନ୍ଧି ହେଲାପରି ଲାଗିବ । କାରଣ ଏହା ଏକ ଶକ୍ତିଶାଳୀ ଉତ୍ତେଜକ ଦ୍ରବ୍ୟ ।

ଆୟୋଡ଼ିନ୍‌ର ସବୁ କରାମତିକୁ ଆଁଟାଏ କରି ଶୁଣୁଥିଲା ବୁଲୁନ୍ । ଶେଷରେ ପଚାରିଲା-''ଦାଦା, କେହି ଯଦି ଆୟୋଡ଼ିନ୍ ପୁଳାଏ ଖାଇଦିଏ ତାହାହେଲେ କ'ଣ ହେବ, ଯଦି କାହାକୁ ଇଞ୍ଜେକ୍‌ସନ ଆକାରରେ ଏହାକୁ ଦିଆଯାଏ ପୁଣି କ'ଣ ହେବ ?'' ଅଧିକ ପରିମାଣରେ ଆୟୋଡ଼ିନ୍ ଶରୀରକୁ ଗଲେ ଏବଂ ଏହା କଡ଼ାଭାଗ ହୋଇଥିଲେ ଅଠଚାଳିଶ ଘଣ୍ଟା ମଧ୍ୟରେ ମନୁଷ୍ୟ ମୃତ୍ୟୁବରଣ କରିବ । ଆଉ ଏହାକୁ ଅଳ୍ପ ହେଲେ ବି ଇଞ୍ଜେକ୍‌ସନ

ଆକାରରେ ଦେଲେ ଧୂସର ରଙ୍ଗର ବାନ୍ତି ହୋଇଯିବ, ନାଡ଼ି ବନ୍ଦ ହୋଇଯିବ ଓ ପରିସ୍ରା ମଧ ବନ୍ଦ ହୋଇଯିବ, ପରିଶେଷରେ ସନ୍ନିପାତ ବି ଧରିନେଇପାରେ ।

-''ଦାଦା, ତୁମେ ତ ଆୟୋଡ୍ଡିନ୍ ବିଷୟରେ ଏତେ କଥା କହିଲ । ହେଲେ ଏହା କେଉଁଠି ରହି ଏତେ କାମ ଆମ ପାଇଁ କରେ ସେ କଥା ତ କହିଲ ନାହିଁ ?'' ପଚାରିଲା ବୁଟୁନ୍ ।

-''ଏହା ଆୟୋଡ଼ାଇଡ୍ ରୂପରେ ସମୁଦ୍ର ଜଳରେ ରହିଥାଏ । ସମୁଦ୍ର ଜଳ ଓ ସ୍ପଞ୍ଜରେ ମଧ କିଛି ପରିମାଣରେ ଏହି ଆୟୋଡ଼ିନ୍ ଥାଏ । କାରଣ ସେମାନେ ଏହାକୁ ସମୁଦ୍ର ଜଳରୁ ପାଇଥାଆନ୍ତି । ସେଥିପାଇଁ ସମୁଦ୍ର ଜଳରୁ ମଧ ବିଭିନ୍ନ ରାସାୟନିକ ଉପାୟରେ ଏହି ଆୟୋଡ଼ିନ୍ ସଂଗ୍ରହ କରାଯାଇଥାଏ । ଏହା ମୁକ୍ତ ଭାବେ ପ୍ରକୃତିରେ ଅବସ୍ଥାନ କରେନାହିଁ । ଏହା କେତେକ ଧାତୁ ସହ ମିଶି ଯୌଗିକ ରୂପରେ ଥାଏ ।

ସିଲଭର୍ ଆୟୋଡ଼ାଇଡ୍ ଏହାର ଏକ ପ୍ରଧାନ ଯୌଗିକ । ସୋଡ଼ିୟମ୍ ସହ ମିଶି ଏହା ସୋଡ଼ିୟମ୍ ଆୟୋଡ଼ାଇଡ୍ ରୂପରେ ପେଟ୍ରୋଲିୟମ୍‌ରେ ଥାଏ । ତା'ଛଡ଼ା ତତେ ତ କହିଛି ଏହା ସମସ୍ତ ପ୍ରାଣୀଙ୍କର ଥାଇରଏଡ୍ ଗ୍ଲାଣ୍ଡରେ ଓ କଡ୍‌ଲିଭର ତେଲରେ ଥାଏ ।

-''ଦାଦା, ଆମ ଶ୍ରେଣୀରେ ଧାତୁ, ଅଧାତୁ ବିଷୟରେ ପଢ଼ା ହେଉଥିଲା ବେଳେ ଦିଦି କହୁଥିଲେ ଯେ ଆୟୋଡ଼ିନ୍ ଏକ ଅଧାତୁ ଅଟେ ଓ ଅଧାତୁ ହେଲେ ମଧ ଏହା ଧାତୁମାନଙ୍କ ପରି ଚକ୍‌ଚକ୍ କରେ । ଏହା କ'ଣ ସତ ?'' ପଚାରିଲା ବୁଟୁନ୍ ।

-''ହଁ , ଦିଦି ଠିକ୍ କହୁଥିଲେ ।'' କହିଲେ ଦାଦା ।

-''ଟିଙ୍କଚର ଆୟୋଡ଼ିନ୍ ବ୍ୟତୀତ ଏହି ଆୟୋଡ଼ିନ୍ ଆମର ଆଉ କ'ଣ କ'ଣ କାର୍ଯ୍ୟରେ ଲାଗେ ?

-''ଏହା ମୁଖ୍ୟତଃ ଔଷଧପତ୍ର ତିଆରିରେ ବ୍ୟବହାର ହୁଏ । ଏହାଛଡ଼ା ଫଟୋ ଉଠାଇବା ସହ ବିଜ୍ଞାନାଗାରରେ ମଧ ବ୍ୟବହାର ହୁଏ, ଏବେ ତୁ ତ ଆୟୋଡ଼ିନ୍ ବିଷୟରେ ଅନେକ କଥା ଜାଣିଲୁ । ଆଜି ଏତିକି ଥାଉ କହି ଦାଦା ଉଠିବାକୁ ଆରମ୍ଭ କଲେ ।



# ସପନ ରାଇଜରେ ଏଲି

ସଞ୍ଜ ନଇଁଲାଣି । ମା ତୁଳସୀ ଚଉରା ମୂଳେ ସନ୍ଧ୍ୟାବତୀ ଜାଳିଦେଲେ । ଏଲି ସେଠାରେ ମୁଣ୍ଡିଆ ମାରିଲା । ଏହାପରେ ନିଜ ପାଠ ବହିଧରି ପଢ଼ାଘରକୁ ଚାଲିଗଲା । ମଗୁଶିର ମାସର ଆରମ୍ଭ ସମୟ । ଶୀତ ଟିକିଏ ଟିକିଏ ପଡ଼ିଲାଣି । ପତଳା ଚଦରଟିଏ ଘୋଡ଼ାଇ ହୋଇ ବିଜ୍ଞାନ ବହିଟି ଖୋଲି ପଢ଼ିଲା । ଏହି ପାଠଟା ତାକୁ ସବୁଠାରୁ ଭଲ ଲାଗେ । କେତେ ନୂଆ ନୂଆ କଥା ଏହି ବିଜ୍ଞାନ ପାଠଟା କହିଦିଏ ।

ଏତିକିବେଳେ ମା ତା'କୁ ଗରମ ଚିନାବାଦାମ ଭଜା ଓ ମୁଢ଼ି ଦେଇଗଲେ । ସେତକ ଖାଇସାରି ବିଜ୍ଞାନପଢ଼ାରେ ପୁଣି ହଜିଗଲା ଏଲି । କିଛି ସମୟ ବହିକୁ ଅନାଇ ରହିଲାପରେ ତା' କୁନିକୁନି ଆଖିପତା ଦୁଇଟି ନିଦରେ ଭାରି ହୋଇଉଠିଲା । ବହି ଉପରେ ମୁଣ୍ଡ ମାଡ଼ି ସେ ହଜିଗଲା ନିଦ ମାଉସୀ କୋଳରେ ।



ମାତ୍ର ସେ ଏ କ'ଣ ଦେଖୁଛି । ଦେହରେ ଚିତ୍ରବିଚିତ୍ରର ପୋଷାକ । ମୁଣ୍ଡରେ ଟୋପି । କାନ୍ଧରେ ବନ୍ଧୁକ ପକାଇ ତା ପାଖରେ କିଏ ଜଣେ ଛିଡ଼ା ହୋଇଛି । ତା ପୋଷାକରୁ ଏଲି ଜାଣିଲା, ଆରେ ଏ ତ ଜଣେ ସୈନିକ ଭାଇ । ସୈନିକଭାଇକୁ ସେ ପ୍ରାଣ ଭରି ଭଲପାଏ ।

ଦେଶପାଇଁ, ଆମପାଇଁ ସେମାନେ ତାଙ୍କ ଜୀବନର ସବୁ ସୁଖ ସରାଗକୁ ଠେଲି ସୀମାନ୍ତରେ ଶତ୍ରୁର ମୁକାବିଲା କରନ୍ତି । ସେମାନଙ୍କ ଯୋଗୁ ବାହାରର ଶତ୍ରୁ ଦେଶ ଭିତରକୁ ପଶିପାରନ୍ତି ନାହିଁ । ଫଳରେ ଆମେ ନିରାପଦରେ ରହିପାରୁଛୁ । ହେଲେ ଏମିତିଆ ଏକ ଶୀତୁଆରାତିରେ ରାଜଧାନୀ ଦିଲ୍ଲୀରୁ ଏ ସୁଦୂର ମଫସଲକୁ ସୈନିକ ଭାଇଟି ଆସିଲା କିପରି ?

ଏଲିର ମନକଥାକୁ କେମିତି କେଜାଣି ସୈନିକଭାଇଟି ଜାଣିଗଲା । ହସିହସି କହିଲା, ''ମତେ ଦେଖି ତୁମେ ଆଶ୍ଚର୍ଯ୍ୟ ହେଉଛନା ?

-''ହଁ ତ, ଆଗ ତୁମେ କୁହତ ଏତେ ବାଟ କିପରିଆସିଲ ?''

-''ଏତେ ବାଟ କାହିଁ ଆସିବି । ମୁଁ ତ ତୁମ ଦେହ ଭିତରେ ଅଛି ।''

-''ଆମ ଦେହ ଭିତରେ କେଉଁଠି ଅଛ ? ଆମ ଦେହରେ କ'ଣ ଯୁଦ୍ଧ ଲାଗିଛି ନା କ'ଣ ?''

-''ହଁ ତୁମ ଦେହ ଭିତରେ ତ ସବୁବେଳେ ଯୁଦ୍ଧ ଲାଗିଛି ହେଲେ ତୁମେ ଜାଣି ପାରୁନ । ଏଇ ତୁମକୁ ଥଣ୍ଡା ଧରିଛି, ନାକ ବନ୍ଦ ହୋଇଯାଇଛି, ଏସବୁ କାହିଁକି ହେଉଛି ?'' ଥଣ୍ଡାର ଜୀବାଣୁ ତୁମ ଦେହ ଭିତରକୁ ପ୍ରବେଶ କଲେ । ତୁମ ରକ୍ତରେ ଖେଳେଇ ହୋଇଗଲେ । ତୁମେ ଥଣ୍ଡା ଭୋଗିଲ ।''

-''ହଁ, ଏହା ତ ସତକଥା । ହେଲେ ଦିଦି ତ କହୁଥିଲେ ଆମ ଚାରିପଟ ଜଳ, ସ୍ଥଳ, ବାୟୁ ଚାରିଆଡ଼େ ଅସଂଖ୍ୟ ରୋଗ ଜୀବାଣୁ ଭରି ରହିଛନ୍ତି । ମାତ୍ର ଆମେ ତ ସବୁବେଳେ ରୋଗରେ ପଡୁନାହୁଁ ।''

-''ଠିକ୍ କହିଛ । ଏହାର କାରଣଟିକିଏ ଚିନ୍ତା କର । ତୁମ ଶରୀର ଭିତରକୁ ସବୁବେଳେ ଜୀବାଣୁ ଆସୁଛନ୍ତି ସତ, ହେଲେ ରୋଗରେ ସବୁବେଳେ ପଡୁନାହଁ । କାରଣ ଏହି ବାହାରର ଜୀବାଣୁମାନଙ୍କ ସହିତ ମତେ ହିଁ ଯୁଦ୍ଧ କରିବାକୁ ପଡ଼େ । ଏଥରକ ଜାଣିଲତ ତୁମ ଶରୀରରେ କିପରି ଯୁଦ୍ଧ ଲାଗିଛି ?''

ପଞ୍ଚମ ଶ୍ରେଣୀରେ ପାଠ ପଢୁଥିବା ଏଲି ଅବୋଧ ଭାବେ ସୈନିକଭାଇର ମୁହଁକୁ ଚାହିଁଲା । କହିଲା, ''ମୁଁ ଏସବୁ କିଛି ବୁଝି ପାରୁନାହିଁ । ମତେ ଟିକିଏ ଭଲ ଭାବରେ ବୁଝାଇ ଦିଅ ।''

-''ତା' ହେଲେ ଶୁଣ । ବାହାରର ଜୀବାଣୁ ତୁମ ଖାଦ୍ୟ, ପାନୀୟ ଓ ପ୍ରଶ୍ୱାସ ବାୟୁରେ ଶରୀର ଭିତରକୁ ସବୁବେଳେ ପ୍ରବେଶ କରିଥାଆନ୍ତି । ତୁମର ଶରୀର ଭିତରେ ଆରାମରେ ରହି ତୁମ ଖାଦ୍ୟକୁ ଖାଇ ତାଙ୍କର ବଂଶବୃଦ୍ଧି କରନ୍ତି । ସେମାନଙ୍କ ଦେହରୁ ବିଷାକ୍ତ ପଦାର୍ଥ ବାହାରି ତୁମ ରକ୍ତ ସହ ମିଶିଯାଏ । ଏତିକି ବେଳେ ମୋର ଜାତିଭାଇମାନେ ଜୀବାଣୁମାନେ ପ୍ରବେଶ କରିଥିବା ଅଂଶକୁ ଚାଲିଯାଆନ୍ତି । ସେମାନଙ୍କୁ ମାରି ତୁମ ଶରୀରକୁ ନୀରୋଗ ରଖିବାକୁ ଚେଷ୍ଟା କରନ୍ତି । ଫଳରେ ତାଙ୍କ ଭିତରେ ଓ ଆମ ଭିତରେ ଯୁଦ୍ଧ ହୁଏ ।

ଏହି ଯୁଦ୍ଧ ଫଳରେ ଯଦି ସେମାନେ ପୂରା ମରିଯାଆନ୍ତି, ତାହାହେଲେ ତୁମକୁ ରୋଗ ହୁଏ ନାହିଁ । ଯଦି ଆମେ ହାରିଗଲୁ, ତା' ହେଲେ ତୁମେ ରୋଗରେ ପଡ଼ ।''

-''ତୁମେ ତ ଜାଣିଛ ଏଲି ଅପା, ରକ୍ତ କ୍ୟାନସର ଏକ ମାରାତ୍ମକ ରୋଗ । ଏ ରୋଗର ଜୀବାଣୁ ଯେତେବେଳେ ତୁମ ଦେହକୁ ସଂକ୍ରମଣ କରନ୍ତିନା, ଆମେମାନେ ସେତେବେଳେ ଯୁଦ୍ଧ କରିବାର ସବୁ ଶକ୍ତି ହରାଇଦେଉ । ଆମେ କିଛି କାମ ନକରି ପାରି ମୃତ ସୈନିକ ପରି ପଡ଼ିରହୁ । ଫଳରେ ଏ ରୋଗ ଜୀବାଣୁ, ଥରେ ପଶିଲେ ନା ତୁମକୁ ଜୀବନରେ ନମାରି ଛାଡ଼ନ୍ତି ନାହିଁ ।''

-''ଏବେ ବୁଝିଗଲି, ବୁଝିଗଲି । ତୁମେ ଯଥାର୍ଥରେ ଆମ ଶରୀର ରକ୍ଷୀ, ଆମ ଶରୀରର ସୈନିକ ଭାଇ । ହେଲେ ତୁମେ ଆମ ଦେହ ଭିତରେ କିପରି ଥାଅ କହିଲ ?''

-''ଆମେମାନେ ତୁମ ରକ୍ତରେ ଥାଉ । ମୋର ନାମ **ଶ୍ୱେତରକ୍ତ କଣିକା** । ଆମ ଛଡ଼ା **ଆମ ପରିବାରରେ** ଲୋହିତ ରକ୍ତ କଣିକା ଓ ଅଣୁଚକ୍ରିକା ମଧ୍ୟ ଥାଏ ।''



ମୁଁ ଦେଖିବାକୁ ଖୁବ୍ ଛୋଟ ଓ **ଅର୍ଦ୍ଧସ୍ୱଚ୍ଛ** । ହେମୋଗ୍ଲୋବିନ ପ୍ରତି ମୋର କୌଣସି ଆକର୍ଷଣ ନାହିଁ । ମାତ୍ର ତୁମ ଲୋହିତ ରକ୍ତକଣିକା ତୁଳନାରେ ମୋର **ସଂଖ୍ୟା ଖୁବ୍ କମ୍** । ଏକ ଘନ ମିଲିମିଟର ରକ୍ତରେ ମୁଁ ତେପନଶହ ରହିଥାଏ । ପ୍ରାୟ ଛଅଶହ ଗୋଟି ଲୋହିତ ରକ୍ତ କଣିକାରେ ମୁଁ ଗୋଟିଏ ମାତ୍ର ଥାଏ । ମୁଁ ତୁମ ଅସ୍ଥିମଜ୍ଜାରେ ଗଠିତ ହୁଏ । କିଛିଦିନ ଧରି ତୁମ ଶରୀରର କାମ କଲାପରେ ମୁଁ ମୃତ୍ୟୁ ମୁଖରେ ପଡ଼େ ।

-''ଆଚ୍ଛା ତୁମେ ତ ସଂଖ୍ୟାରେ ଏତେ କମ୍ । ତୁମେ ଏତେ ସଂଖ୍ୟକ ରୋଗଜୀବାଣୁ ସହ ଲଢ଼େଇ କିପରି କର ।''

-''ହଁ ତାହାତ ସତକଥା । ହେଲେ ବିଧାତା ପୁରୁଷ ଆମକୁ ଗୋଟାଏ ଅଦ୍ଭୁତ ଶକ୍ତି ଦେଇଛି । ତାହାହେଲା ବାହାରର ଜୀବାଣୁ ତୁମ ରକ୍ତରେ ପ୍ରବେଶ କଲାପରେ ମୋର ଜାତି ଭାଇମାନଙ୍କ ସଂଖ୍ୟା ଖୁବ୍ ବଢ଼ିଯାଏ । ନାନା ଉପାୟରେ ଆମେ ସେହି ରୋଗଜୀବାଣୁମାନଙ୍କୁ ମାରିବାକୁ ଚେଷ୍ଟା କରୁ । ଏହି ଲଢ଼ାଇରେ ଯେଉଁମାନେ ମରନ୍ତି, ସେମାନେ ପୂଜପାଣି ଆକାରରେ ତୁମ ଦେହରୁ ବାହାରିଯାଆନ୍ତି । ଏହାଛଡ଼ା ମୁଁ ମଧ୍ୟ ତୁମର ମୃତ ଟିସୁଗୁଡ଼ିକୁ ତୁମ ଶରୀରରୁ ବାହାର କରିବାରେ ସାହାଯ୍ୟ କରେ ।

-''ସତରେ ସୈନିକ ଭାଇ, ତୁମେ ବଞ୍ଚିଲେ ତ ଆମେ ବଞ୍ଚିବୁ ।''

-''ଠିକ୍ କଥା । ସେଥିପାଇଁ ତୁମକୁ ତୁମ ଦେହର ଉପଯୁକ୍ତ ଯତ୍ନ ନେବାକୁ ପଡ଼ିବ । ତୁମେ ମଦ, ଗଞ୍ଜେଇ, ଭାଙ୍ଗ ଇତ୍ୟାଦି ନିଶାଦ୍ରବ୍ୟ ସେବନକଲେ ମୋର ଶକ୍ତି ନଷ୍ଟ ହୋଇଯାଏ । ଫଳରେ ତୁମ ଶରୀରରେ ରୋଗଜୀବାଣୁ ସହଜରେ ପ୍ରବେଶ କରିପାରନ୍ତି । ତେଣୁ ମୋର ସୁରକ୍ଷାପାଇଁ ତୁମେ ଏ ସବୁ ଜିନିଷଠାରୁ ଦୂରରେ ରହିବ । ବିଶୁଦ୍ଧ ପାଣି ପିଇବ । ସୂର୍ଯ୍ୟାଲୋକ ପଡୁଥିବା ସ୍ଥାନରେ ରହିବ । ନିୟମିତ ବ୍ୟାୟାମ କରିବ । ଆବଶ୍ୟକ ବିଶ୍ରାମ ନେବ । ତା' ହେଲେ ମୁଁ ସୁସ୍ଥ ରହିବି ଓ ତୁମକୁ ରୋଗ କବଳରୁ ରକ୍ଷା କରିବି ।

ଏତିକିବେଳେ ମା' ଆସି ଏଲିକି ଉଠାଇଦେଲେ । କହିଲେ, ''ପଢ଼ା ନାଁରେ ବହିକୁ ଧରି ନିଘୋଡ଼ ଶୋଇଛୁ ନା ?'' ଆଖି ମଳି ମଳି ଏଲି ଉଠିବସିଲା । କାହିଁ, ଏତେ ସମୟ ଧରି ତା ସହ କଥା ହେଉଥିବା ସୈନିକ ଭାଇତ ଏଠି ନାହିଁ, ମା ଛିଡ଼ା ହୋଇଛନ୍ତି । କାଲି ବିଜ୍ଞାନ ବହିରେ ପଢ଼ିଥିବା ପାଠକୁ ସେ ତା' ହେଲେ ସପନ ଆକାରରେ ଦେଖୁଥିଲା । ଏତେ ସମୟ ଧରି ସପନ ରାଇଜରେ ଘୂରି ବୁଲୁଥିଲା ଏଲିର ମନ ।



# ଗଛ ଭିତରର ପାଇପ୍

ଟିକି ଗୋଲାପ ଗଛର ପତ୍ରଗୁଡ଼ିକ ମଉଳି ପଡ଼ିଥିଲା । ଦିନକୁଦିନ ଖରା ବହୁତ ଟାଣ ହେଉଛି । ଖରା ଯୋଗୁଁ ଗଛପତ୍ର ଝାଉଁଳି ପଡୁଛନ୍ତି । ଲିଟନ ଦୁଇଦିନ ହେଲା ନଥିଲା । ସେ ତା'ର ମାମୁ ଘରକୁ ଯାଇଥିଲା । ଫେରିଲାମାତ୍ରେ ସେ ତା' ବଗିଚାକୁ ଚାଲି ଆସିଲା । ଦେଖିଲା ତା' ପ୍ରିୟ ଗୋଲାପ ଗଛର ଝାଉଁଳା ଅବସ୍ଥା ।

କୁନି କୁନି ପତ୍ରଗୁଡ଼ିକ ଶୁଖିଲା ମୁହଁରେ ଲିଟନ୍‌କୁ କହିଲେ, ''ଛୋଟୁ ଭାଇ । ତମେ ପାଣି ଟୋପିଏ ଆମ ମୂଳରେ ଦେଲ ନାହିଁ । ଆମର ଏ ଅବସ୍ଥା ହେଲା ।''



ଲିଟନ୍ କଳରୁ ପାଣି ମାରି ସବୁ ଗଛ ମୂଳରେ ଦେଲା । ସେ ତା' ବଗିଚାକୁ ଖୁବ୍ ଭଲ ପାଏ । ସମୟ ପାଇଲେ ଗଛମୂଳରୁ ଘାସ ବାଛି ଦିଏ, ଗଛରେ ପାଣି ଦିଏ ଇତ୍ୟାଦି । ଗୋଲାପ ଗଛଟି ମୂଳରେ ପାଣି ଢାଳିବାର କିଛି ସମୟ ପରେ ଗଛଟି ସତେଜ ଦେଖାଗଲା । ତା'ର କୁନି ପତ୍ରଟି ଲିଟନ୍‌କୁ ଚାହିଁ ଟିକିଏ ହସିଦେଲା । ଲିଟନ୍ କହିଲା, ''କିରେ ତୁ ଏମିତି ମୁହଁ ଶୁଖାଇ ଝାଉଁଳି ବସିଥିଲୁ ଯେ ।''

''ବସିବି ନାହିଁ । ମୁଁ ପରା ଟିକି ଗଛଟିଏ । ବୈଶାଖ ମାସର ଟାଣ ଖରା । ତୁମେ କାଲିଠାରୁ ପାଣି ଦେଇନ, ଝାଉଁଳି ଗଲି ।''

''କାଇଁ ଆମ୍ବ, ଚାକୁଣ୍ଡା ସେମାନେ ତ ତୋ ପରି ଝାଉଁଳୁ ନାହାନ୍ତି ।''

ଗୋଲାପ ଗଛର ଟିକି ପତ୍ରଟି ଅଳ୍ପ ହସିଲା । କହିଲା ମୁଁ ପରା ଛୋଟିଆ ଗଛର ଛୋଟିଆ ପତ୍ରଟିଏ । ମୋ ଚେର ମାଟିର ଅଳ୍ପଗହୀରକୁ ପ୍ରବେଶ କରିଛି । ତୁମେ ତ ଜାଣିଥିବ ଏଇ ଚେର ଆମକୁ ମାଟିରୁ ଜଳ ଶୋଷଣ କରି ଯୋଗାଏ । ଉପର ମାଟିରେ ତ କମ ଜଳ ଅଛି । ତୁମେ ତ ପାଣି ଦେଲ ନାହିଁ, ମୁଁ ଝାଉଁଳି ପଡ଼ିଲି । ହେଲେ ଆମ୍ବ ଗଛ ନା କେତେ ବଡ଼ ଦେଖିଲ । ତା' ଚେର ମାଟିର ବହୁ ଗଭୀରକୁ ଯାଇଛି । ସେ ଅଧିକ ଜଳ ଆଣି ତାକୁ ଯୋଗାଉଛି ।

ଲିଟନ ଆମ୍ବଗଛକୁ ଚାହିଁଲା । ବଗିଚା କୋଣରେ ଜେଜେଙ୍କ ଅମଳରୁ ଶାଖା, ପ୍ରଶାଖା ମେଲାଇ ଏମିତି ଛିଡ଼ା ହୋଇଛି ଏ ଆମ୍ବଗଛଟି । ଏବର୍ଷ ପୁଣି ବଉଳରେ ଭରି ଉଠିଛି ତା'ର ବିଶାଳ ପତ୍ରଭରା ଦେହଟି । ତା'ର ପ୍ରତିଟି ପତ୍ର, ବଉଳ ସମସ୍ତେ ସତେଜ ରହି ହସୁଛନ୍ତି । ସେମାନେ ହାତ ଠାରି ଲିଟନ୍‌କୁ ଡାକିଲେ । କହିଲେ, ''ଛୋଟୁ ଭାଇ, ଆମ ପାଖକୁ ଆସ । ଆମେ ସବୁ କଥା ବତାଇ ଦେବୁ ।''

ଲିଟନ ଆମ୍ବ ଗଛ ପାଖକୁ ଗଲା । କହିଲା, ଆଚ୍ଛା ତମେ ମାଟି ତଳୁ ଜଳ ଶୋଷଣ କର । ହେଲେ ତମେ ତ ଏତେ ବଡ଼ ଗଛ । ଏତେ ଉଚ୍ଚାକୁ ପାଣି ଯାଇ ପହଞ୍ଚେ କିପରି ?''

ବଡ଼ ଆଉ ଛୋଟ ସବୁ ଗଛରେ ବିଧାତା ପୁରୁଷ ଏକ ସରୁ ନଳୀ ଖଞ୍ଜିଛି । ଏଇ ନଳୀ ବଡ଼ ଆଶ୍ଚର୍ଯ୍ୟ ଭାବେ କାମ କରେ । ଚେର ମାଟି ଭିତରୁ ଯେଉଁ ଜଳ ଶୋଷଣ କରେ, ତାକୁ ପାଇପ୍ ସଦୃଶ ଉଠେଇ ଦିଏ ଗଛର ସବୁ ଅଂଶକୁ । ସେହି ନଳୀର ନାମ ଜାଇଲେମ୍ ।

ଏଁ ତୁମ ଜାଇଲେମ୍ ଏତେ ଉଚ୍ଚା ପର୍ଯ୍ୟନ୍ତ ପାଣି ଉଠାଇ ଦେଉଛି । ଆଚ୍ଛା କୁହ, ତା'ପରେ ... ?

ହଁ ଖାଲି କ'ଣ ପାଣି ନିଏ କି ? ପାଣି ନେଇ ପତ୍ର ଖାଲି କ'ଣ କରିବ ? ସେ ମାଟିରେ ଥିବା ଆବଶ୍ୟକ ଧାତବଲବଣ ଯଥା ଲୌହ, ପୋଟାସିୟମ୍, କ୍ୟାଲସିୟମ୍, ଫସ୍‌ଫରସ ଇତ୍ୟାଦିକୁ ଆୟନ ରୂପେ ଜଳ ସହ ଶୋଷଣ କରେ । ସେ ସବୁ ପତ୍ରକୁ ଦେଇଦିଏ । ପତ୍ର ବାୟୁରୁ ଅଙ୍ଗାରକାମ୍ଳ ନିଏ, ସୂର୍ଯ୍ୟଙ୍କ ଠାରୁ କିରଣ ନିଏ ଓ ତା'ର ପତ୍ର ହରିତ୍‌କୁ ମିଶାଇ ଶ୍ୱେତସାର ଖାଦ୍ୟ ରାନ୍ଧିଦିଏ । ପୁଣି ଆଉ ଏକ ନଳୀ ଅଛି । ତା'ର ନାମ ଫ୍ଲୋଏମ୍ । ସେ ଏସବୁ ଖାଦ୍ୟକୁ ବୋହି ନେଇ ଗଛର ସବୁ ଅଂଶକୁ ଯୋଗାଇ ଦିଏ ।

ଖାଦ୍ୟ, ଏପରି ଏକ ସରୁନଳୀ ଦେଇ କିପରି ଯାଏ ?''

ଖାଦ୍ୟ ଜଳରେ ଦ୍ରବୀଭୂତ ହୋଇଯାଏ । ତେଣୁ ଜଳୀୟ ଦ୍ରବଣ ଫ୍ଲୋଏମ୍ ନଳୀ ଦ୍ୱାରା ସୁବିଧାରେ ଯାଇପାରେ । ଏହା ପତ୍ର, ଫୁଲ, ଫଳ, କାଣ୍ଡ, ଚେର ସବୁ ଅଂଶକୁ ଯାଇ ସେମାନଙ୍କ ବୃଦ୍ଧିରେ ସାହାଯ୍ୟ କରେ ।

ଏତେ ସୂକ୍ଷ୍ମନଳୀ ଜାଇଲେମ୍ । ମାଟି ତଳୁ ଏତେ ଉଚ୍ଚା ଉଚ୍ଚା ଗଛର ଅଗ୍ରଭାଗ ପର୍ଯ୍ୟନ୍ତ ଯେ କିପରି ଯାଉଛି ସତରେ ଭାବିଲେ ବଡ଼ ଆଶ୍ଚର୍ଯ୍ୟ ଲାଗେ ।

ସତରେ ଛୋଟୁ ଭାଇ, ଏହି ଜାଇଲେମ୍ ନଳୀଟି ଅତ୍ୟନ୍ତ ସୂକ୍ଷ୍ମ । କେତେକ ଜାଇଲେମ୍ ଅଛି ଯାହାର ବ୍ୟାସ ୦.୦୦୦୧ ମିଲିମିଟରରୁ ମଧ୍ୟ ଊଣା । ତମେ ତ ଜାଣିଥିବ ଗୋଟିଏ ସରୁନଳୀକୁ ପାଣିରେ ବୁଡ଼ାଇଲେ ଏହାର କିଛି ଉଚ୍ଚା ପର୍ଯ୍ୟନ୍ତ ପାଣି ଉଠିଯାଏ । ନଳୀର ଚଉଡ଼ା ଯେତେ କମ୍ ହେବ, ପାଣି ସେତେ ଉପରକୁ ଉଠିଯିବ । ତୁମ ବୈଜ୍ଞାନିକମାନେ କୁହନ୍ତି ଯେ, ଜାଇଲେମ୍ ଏହି ନିୟମ ଅନୁସାରେ କାମ କରି ଉଦ୍ଭିଦର ଅଗ୍ରଭାଗ ପର୍ଯ୍ୟନ୍ତ ପାଣି ଉଠାଇଦିଏ । ତୁମକୁ ଆଶ୍ଚର୍ଯ୍ୟ ଲାଗିଲେ ବି ଏହା ନିଛକ ସତ କଥା ।

କ୍ରମେ ସଞ୍ଜ ନଇଁଆସିଲା । ଚିଁ, ଚାଁ ଶବ୍ଦ କରି ଚଢ଼େଇମାନେ ଫେରୁଥିଲେ । ଲିଟନ ମଧ୍ୟ ଘରକୁ ଆସିଲା, କହିଲା, ଆଉ ଯାହା ରହିଲା କାଲି ଆସି କଥା ହେବା । ମା' ଖୋଜୁଥିବେ, ମୁଁ ଯାଉଛି । ବାଟ ଚାଲୁ ଚାଲୁ ଗଛ ଭିତରେ ଖଞ୍ଜା ହୋଇଥିବା ଏହି ଆଶ୍ଚର୍ଯ୍ୟ ପାଇପଟା କଥା ଭାବୁଥିଲା ।



# ତିମି ଝରଣା

ଚାରିଆଡ଼େ ସମୁଦ୍ରର ଅଥଳ ଜଳରାଶି । ଅନେଇଲେ ଆଖି ପାଉନାହିଁ । ପାଣି ଆଉ ପାଣି । କାନରେ ବାଜୁଛି ଦରିଆ ଅଜାର ଘୂ ... ଘୂ... ଗର୍ଜନ । ସମୁଦ୍ରର ପାଣି ଦୂର ଆକାଶର ନୀଳ ରଙ୍ଗ ସହ ମିଶି ଯାଉଛି । ସେମାନଙ୍କ ସୀମାରେଖା ବାରି ହେଉନାହିଁ । ସେହି ପାଣି କୋଳରେ ନାଚି ନାଚି ଚାଲିଛି ଜାହାଜଟିଏ ।





ଜାହାଜର ଡେକ୍ ଉପରେ ବସିଛି ଲିପୁନୁ । ପାଖରେ ବସିଛନ୍ତି ତାର ଦାଦା । ଲିପୁନୁର ଦାଦା ଜାହାଜରେ ଇଞ୍ଜିନିୟର ଅଛନ୍ତି । ଅଧିକାଂଶ ସମୟ ତାଙ୍କର ଜାହାଜ ଭିତରେ ପାଣି କୋଳରେ କଟିଯାଏ । ଲିପୁନୁର ମନ ହୁଏ ଦାଦା ତାକୁ ଟିକିଏ ତାଙ୍କ ସାଙ୍ଗରେ ନିଅନ୍ତେ କି, ସେ ବୁଲି ଆସନ୍ତା । କେତେ ନୂଆ ରାଇଜ ଦେଖି ଆସନ୍ତା । ଦିନେ ସେ ତା'ର ମନକଥା ଦାଦାଙ୍କ ଆଗରେ କହିଲା । ଦାଦା କହିଲେ, ''ଏଇ କଥା । ହଉ ଅଳ୍ପଦିନ ପାଇଁ ଯିବାର ହେଲେ ତତେ ସାଙ୍ଗରେ ନେଇଯିବି ।''

ଶେଷକୁ ସେହି ଶୁଭ ଦିନଟା ପହଞ୍ଚିଗଲା । ଦାଦାଙ୍କ ସହ ଲିପୁନୁ ଜାହାଜ ଚଢ଼ିଲା । ତାର ଆନନ୍ଦ ଦେଖେ କିଏ । ଦାଦା ଖାଇସାରି ତାକୁ ଡେକ ଉପରକୁ ନେଇଗଲେ । ପାଣିର

ସୁଅ କାଟି କାଟି ଜାହାଜ ଆଗେଇ ଥାଏ । ଲିପୁନୁ ଦାଦାଙ୍କ ପାଖରେ ବସି ଚାରିଆଡର ଦୃଶ୍ୟ ଦେଖୁଥାଏ । ଚାରିପଟର ଦୃଶ୍ୟକୁ ଭଲଭାବେ ଦେଖିବାପାଇଁ ଦାଦା ଲିପୁନୁ ହାତରେ ଏଇ ବାଇନୋକୁଲାର ଦେଇଥାଆନ୍ତି । କେଉଁଠି ଖାଲି ଆଖିରେ ତ, କେଉଁଠି ବାଇନୋକୁଲାରରେ ସେ ଦେଖି ଦେଖି ଚାଲିଥାଏ । ସମୁଦ୍ର କୋଳରେ ସ୍ଥଳଭାଗ ଆଉ ଗଛ ଦେଖିଲେ ତା ମନ ଆନନ୍ଦରେ ନାଚିଯାଏ । ବେଳେବେଳେ ବାଇନୋକୁଲାରରେ ସେ କୂଳ ଆଡକୁ ଦେଖେ ଉଚା ଉଚା ଲହଡି ମାନ ଧାଇଁ ଚାଲିଥାଆନ୍ତି କୂଳ ଛୁଇଁବାକୁ । କୂଳର ବାଲିକୁ ଦେହରେ ମାଖି ଫେରି ଆସୁଥାଆନ୍ତି, ଦରିଆ ଅଜା କୋଳକୁ । ବାଇନୋକୁଲାର ଥୋଇ ତାଳି ମାରେ ଲିପୁନୁ, ଏଇ ଫେରିଗଲେ, ଫେରିଗଲେ କହି । ଖୁବ୍ ଦୂରରେ ଆସୁଥିଲା ଆଉ ଏକ ଜାହାଜ । ତାକୁ ଚାହିଁ ରହିଲା ଲିପୁନୁ ।

ଏହି ସମୟରେ ବାଇନୋକୁଲାର ବୁଲାଉ ଥିଲେ ଦାଦା । ହଠାତ୍ ବାଇନୋକୁଲାରରେ ଏକ ଅଦ୍ଭୁତ ଦୃଶ୍ୟ ତାଙ୍କ ଆଖିରେ ପଡିଲା । ସେ ଚଟ୍‌କରି ଲିପୁନୁକୁ ଦେଖାଇ ଦେଲେ । କହିଲେ, ''ଦେଖି, ଚଞ୍ଚଳ ଦେଖି । କି ସୁନ୍ଦର ଝରଣା ।''

ବାଇନୋକୁଲାରରେ ସେ ଦୃଶ୍ୟ ଦେଖି ଲିପୁନୁ ସତରେ ଆଶ୍ଚର୍ଯ୍ୟ ହୋଇଗଲା । ସମୁଦ୍ର ଭିତରେ ଝରଣାଟିଏ । ସେ ପୁଣି ଝରୁଥିଲା ଶୂନ୍ୟରୁ । ସୂର୍ଯ୍ୟଙ୍କ ରୂପେଲି କିରଣରେ ଝଲମଲ କରୁଥିବା ସମୁଦ୍ର ପାଣିରେ ଝଲମଲ କରୁଥିଲା ଝରଣାଟି । ଝରଣା ପଛ ପଟେ ଗୋଟାଏ କ'ଣ ? ବଡ ପାହାଡଟିଏ କି ? କି ବିଚିତ୍ର କଥା । ତାକୁ ଭାରି ଆଶ୍ଚର୍ଯ୍ୟ ଲାଗିଲା ।

ଜାହାଜ ଆଗେଇ ଚାଲିଲା । ଏହି ବିଚିତ୍ର ସୁନ୍ଦର ଦୃଶ୍ୟଟି କ୍ରମେ କ୍ରମେ ସେମାନଙ୍କ ବାଇନୋକୁଲାରରୁ ଅଦୃଶ୍ୟ ହେବାକୁ ଲାଗିଲା । ମାତ୍ର ଲିପୁନୁର ମନରେ ଆଙ୍କି ହୋଇ ରହିଗଲା ଏ ଦୃଶ୍ୟଟି ।

ଲିପୁନୁ ପିଠିରେ ହାତ ମାରିଲେ ଦାଦା । କ'ଣ ଲିପୁ ବାବୁ । ଏକାବେଳେକେ ଡରିଗଲ ନା ।

-''ନା, ଦାଦା, ଡରି ନାହିଁ ଯେ ହେଲେ ଏଇ ଶୂନ୍ୟରୁ ଝରଣା, ତା ପଛରେ ସେହି ବିରାଟ ପାହାଡ, ଏସବୁ ସମୁଦ୍ର ମଝିରେ କିପରି ସମ୍ଭବ ହେଲା ।''

ଦାଦା କହିଲେ, ''ତୁ ଯାହାକୁ ପାହାଡ କହୁଛୁ ତାହା ପାହାଡ ନୁହେଁ । ତାହା ଏକ ବିରାଟ ତିମି ମାଛ ।

''ବାବାରେ ତିମି ମାଛ । ସମୁଦ୍ର ରାକ୍ଷସ ସେ । ସେ ତ ଲାଞ୍ଜ ପିଟି ଦେଲେ ଆମ ଜାହାଜ ବୁଡିଯିବ ।''

-''ଆରେ ସେ ବହୁ ଦୂରରେ ଅଛି । ତା ନାଁ ଶୁଣିତ ତୁ ଡରି ଗଲୁଣି ।

-''ନା ଦାଦା ଡରିବି କାହିଁକି, ହେଲେ ମତେ ଆଗ ଏଇ ତିମି ଦେହରୁ ଝରୁଥିବା ଝରଣା କଥା ଟିକିଏ ବୁଝାଇଦିଅ ।

-''ତୁ ତ ଜାଣୁ ତିମି ଏକ ବିରାଟ ମାଛ । ପ୍ରଥମେ ଆମର ଧାରଣା ଥିଲା ଯେ ସେ ମାଛ ପରି ଶ୍ୱାସକ୍ରିୟା କରେ । କିନ୍ତୁ ପରେ ଜଣାପଡିଲା ଯେ ଆମରି ଭଳି ନିଃଶ୍ୱାସ ନିଏ । ପାଣି ଭିତରେ ଥିବା ତିମି ମଝିରେ ମଝିରେ ତାର ବିରାଟ ମୁଣ୍ଡକୁ ପାଣି ଉପରକୁ ଉଠାଇ ଦିଏ । ବାହାରର ବାୟୁକୁ ନାକବାଟେ ଗ୍ରହଣ କରେ ଓ ଆମପରି ଦେହ ଭିତରର ପବନକୁ ପୁଣି ବାହାରକୁ ଛାଡିଦିଏ । ଦେହ ଭିତରର ଉଷୁମ ପବନ ଯେତେବେଳେ ଉପରକୁ ଉଠେନା, ତାହା ଏଠାକାର ଜଳୀୟବାଷ୍ପ ସଂସ୍ପର୍ଶରେ ଲାଗି ଜଳକଣାରେ ପରିଣତ ହୁଏ । ତୁ ଯେଉଁ ଝରଣା କହୁଛୁ, ତା ଏହି ଜଳକଣା ।

-''ହେଲେ ଏତେ ଉପରୁ କିପରି ତାହା ପଡୁଛି ।

-''ଆରେ ତିମି ଯେତେବେଳେ ତା ମୁଣ୍ଡଟିକୁ ଟେକି ଦିଏନା ତାହା ପ୍ରାୟ ଚାରି ପାଞ୍ଚ ମିଟର ଉପରକୁ ଉଠିଯାଏ । ତେଣୁ ସେ ଚାରି ପାଞ୍ଚ ମିଟର ଉପରେ ଏହି ଉଷୁମ ପବନ ଛାଡୁଥାଏ । ସମୁଦ୍ର ହେତୁ ଏହା ଉପରିସ୍ଥ ବାୟୁରେ ତ ଜଳୀୟବାଷ୍ପ ଭରି ରହିଛି । ତାହା ଏହି ଉଷୁମ ପବନରେ ମିଶି ଜଳ ହୋଇ ଝରଣା ସୃଷ୍ଟି କଲା ।''

ଲିପୁନୁକୁ ତିମି ଝରଣା କଥା ଶୁଣି ବହୁତ ଆଶ୍ଚର୍ଯ୍ୟ ଲାଗିଲା । ଭାବିଲା ଏ ଦୁନିଆରେ ଏମିତି କେଉଁ ଅଜବକଥା ଅଛି । ବିଜ୍ଞାନ ଏସବୁକୁ ଆମକୁ ସୁନ୍ଦର କରି ସିନା କହି ହେଉଛି । ଜାହାଜ ଚାଲିଥାଏ ଆଉ ଲିପୁନୁ ଭାବି ଚାଲିଥାଏ ତିମି ଝରଣା କଥା ।



# ମିକୁର ପାହାଡ଼ ଦେଖା

ମିକୁର ଅପା ବେଲପାହାଡ଼ରେ ରୁହନ୍ତି । ତା'ର ପିଇସା ସେଠାକାର ଅତିଥି ଭବନରେ ଚାକିରି କରନ୍ତି । ବେଲପାହାଡ଼ ଖୁବ୍ ସୁନ୍ଦର ଜାଗା । ଅପା ମିକୁକୁ ଅନେକ ଥର ଚିଠି ଲେଖିଲେଣି ସେଠାକୁ ଯାଇ ବୁଲି ଆସିବାକୁ । ଏଇବର୍ଷ ଦଶହରା ଛୁଟିରେ ସେଠାକୁ ଯିବାକୁ ମିକୁ ସ୍ଥିର କରିଛି ।





ଦଶହରା ଆସିଗଲା । ସେଥିପାଇଁ ସ୍କୁଲ ଛୁଟି ହେଲା । ବେଲପାହାଡ଼ରେ ଦଶହରା ଖୁବ୍ ଜାକ ଜମକରେ ହୁଏ । ତେଣୁ ଯିବାକୁ ଅପାଙ୍କ ଠାରୁ ଫୋନ ଉପରେ ଫୋନ ଆସିଲା । ଶେଷକୁ ମିକୁ ବାବାଙ୍କ ସହ ବେଲପାହାଡ଼ ବାହାରିଲା ।

କଟକରୁ ବେଲପାହାଡ଼ ସିଧା ବସ୍ ଚାଲେ । ସେମାନେ ସନ୍ଧ୍ୟାରେ ବସ୍‌ରେ ବସିଲେ । ରାତିସାରା ବସ୍ ଚାଲିବ । ଭୋର୍ ଭୋର୍‌ରୁ ଅନ୍ଧାର ନକଟୁଣୁ ବସ ବେଲପାହାଡରେ ପହଞ୍ଚିଯିବ ବୋଲି କଣ୍ଡକ୍ଟର କହିଲା ।

ଜହ୍ନରାତି । କଟକ ସହରକୁ ପଛରେ ପକାଇ ବସ ଧାଇଁଛି । ଦୁଇପଟେ ଅସଂଖ୍ୟ ସବୁଜ ଗଛଲତା, ବିଲ, ବଣ ପାହାଡ଼ । ଜହ୍ନ ଆଲୁଅରେ ଗାଧୋଇ ହସୁଥାଆନ୍ତି ସେମାନେ ।

ମିକୁ ବସ୍‌ର ଝରକା ଦେଇ ଏ ସୁନ୍ଦର ଦୃଶ୍ୟ ଦେଖୁଥାଏ । ଆଉଟା ରୂପା ପରି ଜହ୍ନ ଆଲୁଅ ଗଛ ପତ୍ର ଉପରେ ପଡି ଝଟକୁ ଥାଏ । ପ୍ରକୃତିର ଏ ସୁନ୍ଦର ଦୃଶ୍ୟ ମିକୁକୁ ମୁଗ୍ଧ କଲା । ସେ ଭାବିଲା ଆଜି ଶୋଇବ ନାହିଁ । ଏମିତି ଚେଇଁ ରହି ବାଟର ଏ ଦୃଶ୍ୟକୁ ମନଭରି ଦେଖିବ । ହେଲେ ନିଦ ମାଉସୀ ଚୁପି ଚୁପି ଆସି କେତେବେଳେ ଯେ ତା ଦୁଇ ଆଖିପତାକୁ ବୁଜି ଦେଇଛି ସେ ଜାଣିପାରିନାହିଁ ।

ମିକୁର ନିଦ ହଠାତ୍ ଭାଙ୍ଗିଗଲା । ସେତେବେଳକୁ ବସ୍‌ର ଗତି ଧିମେଇଲାଣି । ବାପା ଡାକିଲେ, "ଉ'ଠ ମିକୁ ବେଲପାହାଡ ହୋଇଗଲା । ଏଥରକ ବସରୁ ଓହ୍ଲାଇବା । ମିକୁ ଆଖି ମଳି ମଳି ତା ଚାରିପାଖକୁ ଚାହିଁଲା । ଚାରିଆଡ ବିଜୁଳି ଆଲୁଅରେ ଝଟକୁଥିଲା । ବେଲପାହାଡ ସହର ବୋଧ ହୁଏ ହୋଇଗଲାଣି । ବସ ଅଟକିଲା । ସେମାନେ ଓହ୍ଲାଇପଡି ଅତିଥି ଭବନ ଆଡକୁ ଚାଲିଲେ ।

ରାତି ପାହି ପାହି ଆସୁଥିଲା । ଅନ୍ଧାରକାଟି ଦିନର ସଫେଦ ଆଲୁଅ ଫୁଟି ଉଠୁଥିଲା । ବିଜୁଳିବତି ଗୁଡିକ ଦିନ ଆଲୁଅରେ ମହଳଣ ଦିଶୁଥିଲେ । ସେମାନେ ଅପାଙ୍କ କ୍ୱାଟରରେ ପହଞ୍ଚିଗଲେ । ନିତ୍ୟକର୍ମ ସାରି ଜଳଖିଆ ଖାଇ ମିକୁ ଶୋଇପଡିଲା । ରାତି ସାରା ଗାଡିରେ ଆସିଥିବାରୁ ତାକୁ ବାଧା ଲାଗୁଥିଲା ।

ପରଦିନ ଖୁବ୍ ସକାଳୁ ଉଠି ପଡିଲା ସେ । ତାକୁ ଜାଗାଟି ଭାରି ଭଲ ଲାଗୁଥିଲା । ଅପା, ପିଇସା ଓ ତାର ବାପା କେହି ବି ଉଠିନଥିଲେ । ସେ ଭାବିଲା ଚାଲି ଚାଲି ଏଇ ଆଖପାଖରେ ଟିକିଏ ବୁଲି ଆସିବ । ସକାଳର ପବନ ସତରେ ଦେହକୁ ଆରାମ ଲାଗେ ।

ବାସ୍ତବିକ୍ ଏ ଜାଗାଟିର ପ୍ରାକୃତିକ ସୌନ୍ଦର୍ଯ୍ୟ ତା'ର ମନକୁ ଆଚ୍ଛନ୍ନ କରିଦେଲା । ସୁନ୍ଦର ଆଉ ଶାନ୍ତ ପରିବେଶ । ଚାରିପଟ ଯାକ ଉଚ୍ଚା ଉଚ୍ଚା ପାହାଡ, ସବୁଜ ଗଛଲତାରେ ଭରା । ମନେହେଉଛି ସତେ ଯେପରି ପାହାଡ ରାଣୀ ସବୁଜ ଓଢଣୀ ଢାଙ୍କି ଦୂର ଦିଗ୍‌ବଳୟରେ ବସି ରହିଛି । ମିକୁ ପାହାଡ଼ ଚଢିବାକୁ ଭାରି ଭଲପାଏ । ମାତ୍ର ଅନୁମାନ କଲା ଯେ ପାହାଡ଼ ଗୁଡ଼ିକ ନିକଟରେ ଥିଲାପରି ଲାଗୁଥିଲେ ବି ସେମାନେ ଦୂରରେ ଅଛନ୍ତି । କାଲି ପିଇସାଙ୍କୁ ଧରି ଆସି ପାହାଡ଼ ଚଢ଼ିବ ଭାବି ସେଦିନ ଫେରିଗଲା ।

ପରଦିନ ସକାଳୁ ହଠାତ୍ ବର୍ଷା ଆରମ୍ଭ ହୋଇଗଲା । ଦିନସାରା ମୂଷଳ ଧାରାରେ ବର୍ଷା ଲାଗି ରହିଲା । ସନ୍ଧ୍ୟା ସମୟକୁ ଯାଇଁ ବର୍ଷା ଛାଡିଲା । ଫଳରେ ସେଦିନ ମିକୁ କୁଆଡେ ଯାଇ ପାରିଲା ନାହିଁ । ମାତ୍ର ପାହାଡ଼ର ସବୁଜ ସୌନ୍ଦର୍ଯ୍ୟ ତା ମନକୁ ଆଚ୍ଛନ୍ନ କରି ରଖିଥାଏ । ରାତି ସାରା ଆଉ ବର୍ଷା ହୋଇନାହିଁ । ପରଦିନ ସକାଳୁ ଶୁଖିଲା ପାଗ ରହିଲା । ତେଣୁ ମିକୁ ପିଇସାଙ୍କୁ ଧରି ପାହାଡ ପାଖକୁ ଗଲା ।

ସେଦିନ କିନ୍ତୁ ପାହାଡର ସୌନ୍ଦର୍ଯ୍ୟ ତାକୁ ଆହୁରି ଭଲ ଲାଗୁଥିଲା । ତା କୋଳର ସବୁଜିମା, ବୁକୁର ମୁଣ୍ଡିଆ ପଥର, ଗୀତ ଗାଇ ଗାଇ ଝରୁଥିବା ଝରଣାଟି ତାକୁ ଦୂରରୁ ମଧ ସ୍ପଷ୍ଟ ଲାଗୁଥିଲା । ସେ ଟିକିଏ ଆଶ୍ଚର୍ଯ୍ୟ ହୋଇଗଲା ! କାଲି ତ ଏଇ ଗଛ ପାଖରୁ ସେ ଫେରିଯାଇଥିଲା । ସେଠାରୁ ପାହାଡ ତ ଏତେ ସ୍ପଷ୍ଟ ଲାଗୁ ନଥିଲା । ଅଥଚ ଆଜି ଏମିତି ସ୍ପଷ୍ଟ ଭାବେ ଦେଖାଯାଉଛି କେମିତି ? ନିଶ୍ଚୟ ଏ ପାହାଡ ଭିତରେ କିଛି ରହସ୍ୟ ଲୁଚି ରହିଛି । ବାଟ ଚାଲୁ ଚାଲୁ କିଛି ସମୟ ଛିଡା ହୋଇ ମିକୁ ଏକଥା ଭାବିଲା ।

ଟିକିଏ ପଛରେ ଆସୁଥିବା ପିଉସା ପଚାରିଲେ, ''କ'ଣ କିରେ ମିକୁ ଏମିତି ଛିଡା ହୋଇଗଲୁ ଯେ । ମିକୁ ତା ମନର କଥାଟି ଖୋଲି କହିଲା । ଆଜି ହଠାତ୍ ପାହାଡଟା ଏମିତି ସ୍ପଷ୍ଟ ଆଉ ସୁନ୍ଦର ଦେଖାଗଲା କେମିତି ?

ପିଉସା ଟିକିଏ ହସିଲେ । କହିଲେ ''ତୁ ପରା ବିଜ୍ଞାନ ପାଠ ପଢୁଛୁ । ଏତିକି କଥା ବୁଝିପାରୁନୁ ।''

-''ଏଥିରେ ବିଜ୍ଞାନ ପାଠ କ'ଣ ରହିଲା ? ''

-''କିରେ ଏତିକି ବୁଝିପାରୁନୁ । କାଲି ଦିନସାରା ଖୁବ୍ ବର୍ଷା ହୋଇଥିଲା । ତୁ ତ ଜାଣିଥିବୁ ଆମ ବାୟୁମଣ୍ଡଳରେ ଧୂଳିକଣା, ପରାଗରେଣୁ, ଜୀବାଣୁମାନଙ୍କ ରେଣୁ ଆଦି ବିଭିନ୍ନ ପ୍ରକାର ପଦାର୍ଥ ସଦାବେଳେ ଭାସମାନ ଅବସ୍ଥାରେ ରହିଥାଏ । ମାତ୍ର ବର୍ଷା ହେବା ଦ୍ୱାରା ବର୍ଷା ଜଳ ଦ୍ୱାରା ଏଗୁଡିକ ଭୂପୃଷ୍ଠକୁ ଖସି ପଡନ୍ତି । ଫଳରେ ବାୟୁମଣ୍ଡଳ ସ୍ୱଚ୍ଛ ହୋଇଯାଏ । ଏହି ସ୍ୱଚ୍ଛ ବାୟୁମଣ୍ଡଳ ଦେଇ ସବୁ ଜିନିଷ ସ୍ପଷ୍ଟ ଦେଖାଯାଏ । ଏବେ ବୁଝିଲୁ ତ ବର୍ଷା ହେତୁ ପର୍ବତଟା ଏମିତି ସ୍ପଷ୍ଟ ଦେଖାଗଲା ।''

ମିକୁ ଏବେ ବୁଝିଲା ଏହା ପ୍ରକୃତରେ ବିଜ୍ଞାନପାଠର କରାମତି ।



# କମ୍ ଖାଅ, ସୁସ୍ଥ ରୁହ

ଗୋରା ତକତକ ପତଳା ଚେହେରାର ପିଲାଟିଏ । ନାମ ତାର ଚିକିଲି । ମୁହଁରୁ ସବୁବେଳେ ହସର ଫୁଲଝରି ଝରୁଥାଏ । ଦେଖିଲେ ତାକୁ ଖୁସିଲାଗେ ।

ହେଲେ ଚିକିଲିକୁ ନେଇ ମା'ଙ୍କର ଅନେକ ଚିନ୍ତା । ଚିକିଲିର ଏଇ ପତଳା ଚେହେରାଟା ହିଁ ମାଙ୍କୁ ଚିନ୍ତାରେ ପକାଇଛି । ଯେତେ ଯତ୍ନରେ ରୋଷେଇ କଲେ ବି ସେ କ'ଣ ଏଣ୍ଣୁତେଣ୍ଣୁ ଦିଟା ଖାଇଦେଇ ଉଠିଯିବ । ମା'ଙ୍କ ମନ ବୁଝେ ନାହିଁ । ସେ ତାକୁ ଜବରଦସ୍ତ ଧରି ପୁଣି ବସାଇବେ ଓ ଆଉ ଖାଇବାକୁ କହିବେ । ଚିକିଲି ଖାଇ ପାରିବ ନାହିଁ କହି କାନ୍ଦି ପକାଇବ । ହେଲେ ମା' ଛାଡ଼ିବେ ନାହିଁ । ଚିକିଲି ଓ ମା'ଙ୍କର ଏହି ପର୍ବଟା ସକାଳେ, ରାତିରେ ଚାଲିଥାଏ ।

ଏସବୁ ଦେଖିଦେଖି ଚିକିଲିର ବାପା ଅନେକଥର କହିଲେଣି, 'ଓହୋ ପିଲାଟା ଯାହା ଖାଇବ ଖାଉ, ତାକୁ ଏତେ ବାଧ କାହିଁକି କରୁଚ ?'' ମା କିନ୍ତୁ କିଛି ଶୁଣନ୍ତି ନାହିଁ । ତାଙ୍କର ଇଚ୍ଛା ଚିକିଲି ଅଧିକ ଖାଇଲେ ବେଶ୍ ସୁସ୍ଥ ସବଳ ହୋଇଯିବ । ପଞ୍ଚମ ଶ୍ରେଣୀରେ ପାଠ ପଢୁଥିବା ଚିକିଲିକୁ ଏବେ ଦଶ ବର୍ଷ ହେଲାଣି । ମାତ୍ର ତାର ପତଳା ଚେହେରା ଯୋଗୁ ସେ ସାତ, ଆଠ ବର୍ଷର ପିଲାଟିଏ ପରି ଲାଗୁଛି । ସେଥିପାଇଁ ମା'ଙ୍କ ମନ ଦୁଃଖ । ତାଙ୍କର ଇଚ୍ଛା ସେ ଅଧିକ ଖାଇଲେ ମୋଟା ହେବ । ପିଲାଟିଏ ପରି ଲାଗିବ ।

ସାଢ଼େ ନଅଟାରେ ଚିକିଲିର ସ୍କୁଲ ବସ୍ ଆସିଯାଏ । ମା' ନଅଟା ପୂର୍ବରୁ ତାର ଖାଇବା କାମ ସାରି ଦିଅନ୍ତି । ଭାତ ସହ ତରକାରୀ, ଭଜା ହୋଇ ଦୁଇ ତିନି ପ୍ରକାରର କରନ୍ତି । ଭାବନ୍ତି ଚିକିଲି ଟିକିଏ ଅଧିକା ଖାଇଦେବ କିପରି ? ଭାତ ବାଢ଼ି ଚିକିଲିକୁ ଖାଇବାକୁ ଦେଇ ତା ପାଖରେ ବସିଥିଲେ ମା । ଘର ଭିତରକୁ ପଶି ଆସିଲେ ତାର ମାମୁ ।

ଚିକିଲିର ମାମୁ ଦିଲ୍ଲୀରେ ବୈଜ୍ଞାନିକ ଅଛନ୍ତି । ଅନେକ ଦିନ ପରେ ସେ ତାଙ୍କ ଘରକୁ ଆସିଛନ୍ତି । ଚିକିଲି ମାମୁଙ୍କୁ ଦେଖୁ ଦେଖୁ ଆନନ୍ଦରେ ନାଚି ଉଠିଲା । ଖାଇବାଛାଡ଼ି ମାମୁଙ୍କ ପାଖକୁ ଦୌଡ଼ିଲା । ମାମୁ କହିଲେ, ମୁଁ ତୋରି ପାଖରେ ବସିଛି ।

ତୁ ଖାଇଦେ । ତୁ ଖାଇ ସାରିଲେ ମୁଁ ପୋଷାକ ବଦଳାଇବି । ସବୁଦିନ ପରି ଖାଇସାରି କିଛି ଭାତ, ତରକାରୀ ଛାଡ଼ି ଉଠିଯାଉଥିଲା ଟିକିଲି । ମା ତାର ହାତ ଧରି ପୁଣି ବସାଇଦେଲେ । ପାଟିକରି ଖୋଇ ଦେଲେ । ଟିକିଲି ହାତ ଛାଟି କାନ୍ଦିବାକୁ ଲାଗିଲା ।

ଏ ଦୃଶ୍ୟ ଦେଖି ଅଳ୍ପ ହସି ମାମୁ କହିଲେ ଥାଉ ଅପା, ତାକୁ ବାଧ କରନା । ସେ ନିଜ ଇଚ୍ଛାରେ ଯେତିକି ଖାଉଛି ଖାଉ ।

ଦେଖିଲ ମାମୁ । ମା, ମତେ ସଦାବେଳେ ଏମିତି କରେ, ଆମ ବିଜ୍ଞାନ ସାର କହିଥିଲେ ଅଳ୍ପ ଖାଇଲେ ବହୁଦିନ ବଞ୍ଚିବ । ମୁଁ ଯେତେ କହିଲେ ମା ଜମା ବୁଝେ ନାହିଁ ।



ମା ସୁନୀତା ଦେବୀ ରାଗି କହିଲେ ଶୁଣୁ ଆ କଥା ଆଉ ଯା ଶିକ୍ଷକଙ୍କ କଥା । ଅଳ୍ପ ଖାଇଲେ କୁଆଡ଼େ ଭଲ । ସେଇଥିପାଇଁ ତ ଏମିତି ପତଳା ନହନହକା ହୋଇଛୁ ।

ନା ଅପା ଏହା ତୋର ଭୁଲ୍ ଧାରଣା । ଏହା ଏକା ତୋର ନୁହେଁ, ଆମର ସବୁ ମା' ମାନଙ୍କର ମନର ଧାରଣା ଏହିପରି । ସେମାନେ ଭାବନ୍ତି ତାଙ୍କ ପିଲାମାନେ କିପରି ଅଧିକ ଭାବେ ଖାଇଲେ ସୁସ୍ଥ, ସବଳ, ନିରୋଗ ହେବେ । ମାତ୍ର ଏ ଧାରଣା ପୂରାପୂରି ଭୁଲ୍ । ଆମ ବୈଜ୍ଞାନିକମାନେ ଏବେ ଗବେଷଣା କରି ପ୍ରମାଣ କରିଛନ୍ତି ଯେ କମ୍ ଖାଇବା ଲୋକେ ହିଁ ଅଧିକ ଦିନ ସୁସ୍ଥ ଭାବେ ବଞ୍ଚି ରହିବେ । ଅବଶ୍ୟ କମ୍ ଖାଇବା ଅର୍ଥ ନୁହେଁ ଯେ ଟିକିଏ ଖାଇବ । ନିଜ ଇଚ୍ଛା ଯେତିକି ହେବ ସେତିକି ଖାଇବ । ବଳେଇ ବଳେଇ ଅଧିକ ଖାଦ୍ୟ ଖାଇବ ନାହିଁ ।

ଠିକ୍ କଥା କହିଛ ମାମୁ । ମା'କୁ ଟିକିଏ ବୁଝାଇ ଦିଅ । କହିସାରି ହାତ ଧୋଇ ପକାଇ ସ୍କୁଲ ବ୍ୟାଗ ଓ ପାଣିବୋତଲ ଧରି ବସ୍‌ର ହର୍ଣ୍ଣକୁ କାନପାରି ମାମୁଙ୍କ ପାଖେ ବସି ପଡ଼ିଲା ଟିକିଲି ।

ମାତ୍ର ସୁନୀତା ଦେବୀ ପାଟିକରି ଉଠିଲେ, ଏ କି ଓଲଟା କଥା କହୁଛୁ କିରେ ସୁନୁ ।

ମୁଁ ଠିକ୍ କଥା କହୁଛି ଅପା ଶୁଣୁ । ଅଳ୍ପ ଖାଇବା ଓ ଭଲଭାବେ ବ୍ୟାୟାମ କରିବା ଦ୍ୱାରା ଆମ ଶରୀର ଭିତରେ ଖାଦ୍ୟରେ ଥିବା ଭିଟାମିନ୍ ଗୁଡ଼ିକ ଅଧିକ ଭାବେ କାମ କରନ୍ତି । ଯାହାକି ଆମ ବୟସ ବଢ଼ିବା ହାରକୁ କମାଇ ଦିଏ, ଫଳରେ ଜଣେ ଅଧିକ ଦିନ ବଞ୍ଚିବା ସହିତ ନିରୋଗ ଜୀବନ ଯାପନ କରିପାରେ ।

ଆମେରିକାର ଜାତୀୟ ଗବେଷଣାଗାରରେ ବୈଜ୍ଞାନିକମାନେ ପରୀକ୍ଷାକରି ପ୍ରମାଣ କରିଛନ୍ତି ଯେ କମ୍ ଖାଇଲେ କ୍ୟାନସର ଓ ହାର୍ଟଡିଜିଜ୍ ପ୍ରଭୃତିର ଭୟ ମଧ କମ୍ ଥାଏ ।

ସେମାନେ କିଛି ମୂଷାନେଇ ସେମାନଙ୍କୁ କମ୍ ଖାଦ୍ୟ ଖାଇବାକୁ ଦେଇ ସେମାନଙ୍କ ଉପରେ ଗବେଷଣା ଚଳାଇଲେ । ଶେଷକୁ ବୈଜ୍ଞାନିକମାନେ ପ୍ରମାଣ କଲେ ଯେ ଏହି ମୂଷାମାନେ କେବଳ ଅଧିକ ଦିନ ବଞ୍ଚୁ ନାହାନ୍ତି ସେମାନେ କ୍ୟାନସର ପରି ରୋଗରୁ ମଧ ଦୂରରେ ରହୁଛନ୍ତି ।

ଆରେ ଏତେ ବଡ଼ ଆଶ୍ଚର୍ଯ୍ୟର କଥା । ଏପରି କାହିଁକି ହେଉଛି ବା ? ପଚାରିଲେ ସୁନୀତା ।

ଅବଶ୍ୟ ଏପରି କାହିଁକି ହେଉଛି ତା ବିଷୟରେ ଏବେ ଭଲ ଭାବେ ଜଣାଯାଇ ନାହିଁ । ତଥାପି ଆମ ବୈଜ୍ଞାନିକମାନେ ଅନୁମାନ କରନ୍ତି ଯେ ଅଧିକା ଖାଇବା ଦ୍ୱାରା ଆମ ଶରୀରସ୍ଥ ଜୀବକୋଷମାନଙ୍କ ଉପରେ ଅଧିକା ଚାପ ପଡ଼େ, ଯାହାଦ୍ୱାରା କି ସେମାନେ ଅଧିକା କାର୍ଯ୍ୟ କରିପାରନ୍ତି ନାହିଁ । ଫଳରେ ଆମେ ରୁଗ୍ଣ ହେଉ ଓ ବୟସ ବଢ଼ିଗଲା ପରି ଲାଗେ ।

ମାମୁଙ୍କର ଏହି କଥା ଶୁଣୁ ଶୁଣୁ ଏତିକିବେଳେ ସ୍କୁଲ ବସ୍‌ର ହର୍ଣ୍ଣ ଶୁଣାଗଲା । ବ୍ୟାଗଧରି ଚାଲି ଯାଉ ଯାଉ ଟିକିଲି କହିଲା ଶୁଣିଲୁ ତ ମା, ମତେ ଏଥର ଅଧିକା ଅଧିକା ଖାଇବାକୁ ଜମା ବାଧ କରିବୁ ନାହିଁ । ମା ସୁନୀତା ଦେବୀ ମଧ ଠିକ୍ ବୁଝିଗଲେ ।



# ସମୁଦ୍ରର ବିସ୍ମୟ



ପୁରୀର ସମୁଦ୍ର କୂଳ । ଯାତ୍ରୀମାନଙ୍କ ସହ ଚାର୍ଟ ଓ ଗୁପଚୁପ୍‌ବାଲାଙ୍କ ଭିଡ । ତା' ସହ ବାଲିରେ ବସିଥାଏ ଶଙ୍ଖ ଓ ଶାମୁକା ତିଆରି ନାନା ଜିନିଷର ଦୋକାନ । ମାମୁଙ୍କ ସହ ବୁଲିବୁଲି ଏସବୁ ଦେଖୁଥାଏ ମୋନାଲି । ଏସବୁରୁ ମନଛାଡି, ମନ ତା'ର ଧାଇଁଲା ସମୁଦ୍ର ପାଣି ପାଖକୁ । ମାମୁଙ୍କ ହାତଧରି ସେ ପାଣି କୂଳକୁ ଗଲା । ଅତି ନିକଟରୁ ସେ ସମୁଦ୍ରକୁ ଦେଖିବ । ବାପ୍‌ରେ କେତେ ବଡ଼ ଏ ସମୁଦ୍ର । ଅନେଇଲେ ଆଖି ପାଉନାହିଁ । କେଉଁଠି ସରିଛି କେଜାଣି ।

ସବୁଠାରୁ ତାକୁ ମଜା ଲାଗୁଥାଏ ସମୁଦ୍ର ପାଣିରେ ଉଠୁଥିବ । ଢେଉର ନାଚ ଦେଖିବାକୁ । କେମିତି ସେମାନେ ତା' ପଛକୁ ପଛ ଆସି ମାଟିଛୁଇଁ ପୁଣି ଫେରିଯାଉଛନ୍ତି ।

ବେଳେବେଳେ ମଜା କରିବାକୁ ସେ ତା' ଗୋଡକୁ ଦେଖାଇ ଦିଏ । ଢେଉ ଆସି ଭିଜାଇଦିଏ ତା' ଗୋଡକୁ । ମନ ତା'ର ଭରିଯାଏ ଖୁସିରେ । ମୋନାଲିକୁ ସେଠାରେ ଛାଡି ଅଳ୍ପ ଦୂରରୁ ମାମୁ ଚାର୍ଟ ପ୍ଲେଟ୍‌ଟିଏ ଆଣିବାକୁ ଗଲେ । ଚାର୍ଟ ଆଣି ମୋନାଲି ହାତକୁ ବଢ଼ାଇ ଦେଲେ । ଚାର୍ଟ ଖାଉଥିବା ମୋନାଲିର ଆଖି କିନ୍ତୁ ଲାଖି ରହିଥାଏ ସମୁଦ୍ର ପାଣିରେ ।

କିଛି ସମୟ ପାଣିକୁ ଚାହିଁ ଚାହିଁ ମୋନାଲି ପଚାରିଲା, ମାମୁ ଏ ଢେଉମାନେ ତ ବଢିଆ ଦୋଳି ଖେଳୁଛନ୍ତି । କେମିତି ମଜାରେ ସେମାନେ ଆସୁଛନ୍ତି ଦେଖମ । ଆଗ ଗୋଟିଏ ସ୍ତର ଆସୁଛି । ତା' ପଛକୁ ଆଉ ଗୋଟିଏ ଆସି ତା' ଉପରେ ମାଡିଯାଉଛି । ଏମିତି କାହିଁକି

ହେଉଛି ମାମୁ । ମତେ ଟିକିଏ ବୁଝାଇ ଦିଅ । ମାମୁ କହିଲେ, ଏହାତ ଗୋଟିଏ ସାଧାରଣ କଥା । ଯେଉଁଟା ଟିକିଏ ହାଲୁକା ତାହା ଉପରକୁ ଆସୁଛି ଓ ଯାହା ଓଜନିଆ ତାହା ତଳକୁ ଚାଲିଯାଉଛି । ତେଣୁ ଢେଉମାନେ ଏମିତି ଉପର ତଳ ହୋଇ ଦୋଳି ଖେଳୁଛନ୍ତି କେଉଁକାଳରୁ ।

ସମୁଦ୍ରପାଣିରେ ସେମିତି ଆଖିକୁ ରଖି ମୋନାଲି ପୁଣି ପଚାରିଲା, ମାମୁ, ସାର୍ କହୁଥିଲେ ଏଇ ସମୁଦ୍ର ଆମ ପୃଥିବୀର ସମୁଦାୟ ଅଂଶର ଶତକଡ଼ା ୭୦ ଭାଗ ସ୍ଥାନ ଅଧିକାର କରିଛି । ଏତେ ବିରାଟ ଅଂଶରେ ରହୁଥିବା ଏହି ଜଳରାଶି ଏମିତି ଗଡ଼ି ଗଡ଼ି ଲହଡ଼ି ଭାଙ୍ଗି ଗତି କରୁଛି କିପରି ।



ମାମୁ କହିଲେ ଏହାତ ସମୁଦ୍ରର ଏକ ବିସ୍ମୟ । ସମୁଦ୍ରବିଦ୍‌ମାନଙ୍କ ମନରେ ଅନେକଦିନରୁ ଏ ପ୍ରଶ୍ନଟି ଥିଲା । ଏହାପରେ ସେମାନେ ଦୀର୍ଘଦିନ ଧରି ଏହା ଉପରେ ଗବେଷଣା ଚଳାଇଲେ । ଏଥିପାଇଁ ସେମାନେ ସମୁଦ୍ର ଜଳରେ ପରିଦୃଷ୍ଟ ହେଉଥିବା ଟ୍ରିଟିୟମ ନାମକ ଏକ ପଦାର୍ଥର ସାହାଯ୍ୟ ନେଇଥିଲେ ।

ଏହି ଟ୍ରିଟିୟମ୍‌ଟି ପୁଣି କ'ଣ ମାମୁ ?

ଏହା ହେଉଛି ଉଦ୍‌ଜାନର ଏକ ଆଇସୋଟୋପ୍ । ମହାଜାଗତିକ ରଶ୍ମିର ବିକିରଣ ଏବଂ ପୃଥିବୀର ଉପରିସ୍ଥ ବାୟୁମଣ୍ଡଳ ମଧ୍ୟରେ ପ୍ରତିକ୍ରିୟା ଘଟି ଏହା ଉତ୍ପନ୍ନ ହୁଏ । ଏହା ବାୟୁମଣ୍ଡଳର ଗୋଟିଏ ଉଦ୍‌ଜାନ ଓ ଗୋଟିଏ ଅମ୍ଳଜାନ ପରମାଣୁ ସହ ମିଶି ଏକ ପ୍ରକାର ଟାଇଟ୍ରେଡ୍ ଜଳ ପ୍ରସ୍ତୁତ କରେ । ଏହା ବର୍ଷା ଓ ଘନୀକରଣ ପ୍ରକ୍ରିୟା ଯୋଗୁଁ ୩୦ରୁ ୪୦ ଦିନ ପର୍ଯ୍ୟନ୍ତ ସମୁଦ୍ର ଜଳର ଉପରିଭାଗରେ ଜମା ହୋଇ ରୁହେ । ଏହାର ଉପସ୍ଥିତି ହିଁ ସମୁଦ୍ର ଜଳକୁ ଏପରି ବିସ୍ମୟକର ଭାବେ ତଳ ଉପର କରିଥାଏ ।

ଏକଥା କିପରି ଜଣାପଡ଼ିଲା ? ପଚାରିଲା ମୋନାଲି ।

ଫ୍ରାନ୍ସର କିଛି ଜଳବାୟୁ ବିଶେଷଜ୍ଞ ଓ ପରିବେଶବିତ୍‌ମାନେ ପରୀକ୍ଷାଗାରରେ ସମୁଦ୍ରଜଳକୁ ନେଇ ପରୀକ୍ଷା କରି ଏକଥା ପ୍ରମାଣ କରିଥିଲେ । ସେମାନେ ପ୍ରଶାନ୍ତ ମହାସାଗର, ଭାରତ ମହାସାଗର, ଆଟଲାଣ୍ଟିକ୍ ମହାସାଗର ପ୍ରଭୃତିର ବିଭିନ୍ନ ସ୍ଥାନରୁ ଚାରି ହଜାର ମିଟରରୁ ପାଞ୍ଚ ହଜାର ମିଟର ପର୍ଯ୍ୟନ୍ତ ଗଭୀରରୁ ଜଳ ସଂଗ୍ରହ କଲେ । ଏହାକୁ ପରୀକ୍ଷାଗାରରେ ପରୀକ୍ଷା କରି ସେଥିରେ ଟ୍ରିଟିୟମ୍ ଥିବାର ପ୍ରମାଣ ପାଇପାରିଥିଲେ । ଟ୍ରିଟିୟମ୍‌ର ଉପସ୍ଥିତି ହିଁ ସମୁଦ୍ରପାଣିକୁ ଏପରି ବିସ୍ମୟକର ଭାବେ ଗତି କରାଉଥିବାର ଜାଣିପାରିଲେ ।

ସମୁଦ୍ରର ଗାଢ଼ ନୀଳ ରଙ୍ଗର ପାଣିକୁ ଦେଖି ଦେଖି ଅନେକ ଦିନରୁ ଯେଉଁ ପ୍ରଶ୍ନଟି ମୋନାଲିର ଟିକି ମୁଣ୍ଡରେ ଉଙ୍କି ମାରିଥିଲା, ତାହା ମାମୁ ବେଶ୍ ସୁନ୍ଦର ଭାବେ ସମାଧାନ କରିଦେବାରୁ ମୋନାଲି ଖୁସି ହୋଇଗଲା ।

ଚାର୍ଟ ଖିଆ ବି ସରି ଯାଇଥିଲା । ଏବେ ସେମାନେ ଘର ଆଡ଼କୁ ଫେରିଲେ ।



# ସୂର୍ଯ୍ୟ ଯହିଁ ପଶ୍ଚିମେ ଉଏଁ

ରାତି ପାହିଲେ ସକାଳ ଆସେ । ପୂର୍ବ ଦିଗରେ ହସି ହସି ଦେଖାଦିଅନ୍ତି ସୂର୍ଯ୍ୟ ଦେବତା, ଲାଲ ଟହଟହ ହୋଇ । ତାଙ୍କର କଅଁଳ କିରଣକୁ ଢ଼ାଳି ଦିଅନ୍ତି ମାଟି ମାଆର ବୁକୁରେ । ସାରାଦିନ ପୃଥିବୀକୁ ଆଲୋକରେ ଝଲସାଇ ରଖନ୍ତି ସେ । ଏହା ପରେ ସଞ୍ଜ ନଇଁ ଆସେ । ସୂର୍ଯ୍ୟ ଦେବତା ମୁହଁ ଲୁଚାଇ ଦିଅନ୍ତି ପଶ୍ଚିମ ଆକାଶର ଲାଲ ପଣତ ତଳେ ।

ଏତ ନିତିଦିନିଆ କଥା ପ୍ରତିଦିନ ଆମେ ଦେଖୁ ସୂର୍ଯ୍ୟ ଦେବତା ପୂର୍ବ ଦିଗରେ ଉଇଁ ପଶ୍ଚିମ ଦିଗରେ ଅସ୍ତ ହୁଅନ୍ତି । ହେଲେ ଲକି ଯେତେବେଳେ ତା ପିନୁ ଅପାଠାରୁ ଶୁଣିଲା ଏମିତି ଗୋଟିଏ ଯାଗା ଅଛି ଯେଉଁଠି ସୂର୍ଯ୍ୟ ପଶ୍ଚିମ ଦିଗରେ ଉଦୟ ହୁଅନ୍ତି ଓ ପୂର୍ବଦିଗରେ ଅସ୍ତ ହୁଅନ୍ତି ତାକୁ କଥାଟା ମିଛ ଲାଗିଲା । ପ୍ରକୃତ ଘଟଣାଟା କ'ଣ ସେ ଜାଣିବା ପାଇଁ ପିନୁ ଅପା ପାଖରେ ବସି ପଚାରିବାକୁ ଲାଗିଲା ।

ପିନୁ ଅପା କହିଲା, ''ଆରେ ଲକି, ଏ କଥା ସମ୍ପୂର୍ଣ୍ଣ ସତ କଥା । ହେଲେ ଜାଣୁନା ଏ ଆଶ୍ଚର୍ଯ୍ୟ ଘଟଣା ଆମ ପୃଥିବୀରେ ଘଟେ ନାହିଁ । ଏହା ଆମ ପୃଥିବୀଠାରୁ ପ୍ରାୟ ଦୁଇଶହ କୋଟି ମାଇଲ ଦୂରରେ ଥିବା ୟୁରାନ୍‌ସ ଗ୍ରହରେ ଘଟେ । ଏହି ଗ୍ରହଟିକୁ ଆମେ ଇନ୍ଦ୍ର ବୋଲି କହିଥାଉ । ''ତାହାହେଲେ ଏଠି କାହିଁକି ଏମିତି ହୁଏ ? ମତେ ସେ କଥା ଟିକେ ବୁଝାଇ ଦିଅ ଅପା'' ଲକି ପଚାରିଲା । ପିଲାଙ୍କ ମନରେ ଥିବା ଜାଣିବାର ଆଗ୍ରହକୁ ଭାଙ୍ଗିଦେବାର ନୁହେଁ । ତେଣୁ ପିନୁ ଏହି ଆଶ୍ଚର୍ଯ୍ୟ ଘଟଣା ବିଷୟରେ ଲକିକୁ କହିବାରେ ଲାଗିଲା ।



ପିନୁ କହିଲା ମନଦେଇ ସେ କଥା ଶୁଣୁ ଇକି । ୧୮୭୧ ଖ୍ରୀଷ୍ଟାବ୍ଦରେ ଏହି ୟୁରାନସ ଗ୍ରହଟିକୁ ଇଂଲଣ୍ଡର ପ୍ରସିଦ୍ଧ ଜ୍ୟୋତିର୍ବିଜ୍ଞାନୀ ହର୍ସେଲ ଏକ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଆବିଷ୍କାର କରିଥିଲେ । ଅବଶ୍ୟ ଆମ ଜ୍ୟୋତିର୍ବିଦମାନେ ୧୬୯୦ ଖ୍ରୀଷ୍ଟାବ୍ଦରୁ ଏହି ଗ୍ରହଟିର ଅବସ୍ଥିତି ସମ୍ପର୍କରେ ସୂଚନା ପାଇଥିଲେ । ମାତ୍ର ସେମାନେ ଏହା ବିଷୟରେ ଅଧିକ କିଛି ଜାଣି ପାରିନଥିଲେ । ସେମାନଙ୍କର ଧାରଣା ଥିଲା ଯେ ଏହା ଏକ ନକ୍ଷତ୍ର । ହର୍ସେଲ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯିଏ କି ଜଣାଇଦେଲେ ଯେ ଆମ ପୃଥିବୀ ପରି ଏହା ଏକ ଗ୍ରହ । କାରଣ ଅନ୍ୟ ଗ୍ରହମାନଙ୍କ ପରି ଏହା ଏକ ନିର୍ଦ୍ଦିଷ୍ଟ କକ୍ଷରେ ସୂର୍ଯ୍ୟଙ୍କ ଚାରିପଟେ ଘୂରୁଅଛି ।

- ''ଆମ ପୃଥିବୀ ପରି ଏହାତ ଏକ ଗ୍ରହ । ହେଲେ ଏଥିରେ ସୂର୍ଯ୍ୟ ପଶ୍ଚିମ ଦିଗରେ ଉଦୟ ହୁଅନ୍ତି କାହିଁକି ? ପଚାରିଲା ଇକି ।

- ''ତୁ ଆଗ ସେ ଗ୍ରହଟି ବିଷୟରେ ଶୁଣୁ । ତାପରେ ନିଜେ ବୁଝି ପାରିବୁ । କ୍ରମେ ଏହି ଗ୍ରହଟି ବିଷୟରେ ଅନେକ କଥା ଆବିଷ୍କାର ହେଲା । ଜଣାଗଲା ଯେ ଏହା ସୂର୍ଯ୍ୟଙ୍କ ଠାରୁ ଅଠେଇଶ ହଜାର ସାତଶହ କୋଡ଼ିଏ ଲକ୍ଷ କିଲୋମିଟର ଦୂରରେ ଅବସ୍ଥିତ । ଏହା ସୂର୍ଯ୍ୟଙ୍କ ଠାରୁ ଦୂରତା ଅନୁସାରେ ସପ୍ତମ ଗ୍ରହ । ଏତେ ଦୂରରେ ରହିଥିବାରୁ ଏହା ଖୁବ୍ କମ୍ ଆଲୋକ ଓ ଉତ୍ତାପ ପାଇଥାଏ । ଏହାର ତାପମାତ୍ରା ବରଫର ତାପମାତ୍ରା ଠାରୁ ୧୯୦° ସେଲ୍‌ସିୟସ କମ୍ । ତେଣୁ ଏତେ ଥଣ୍ଡାରେ ଏଠାରେ ଜୀବଜନ୍ତୁ ବଞ୍ଚିବା ସମ୍ଭବ ନୁହେଁ ।

ଅନ୍ୟାନ୍ୟ ଗ୍ରହମାନଙ୍କ ପରି ଏହାର ବାୟୁମଣ୍ଡଳ ଅଛି । ଦୂରବୀକ୍ଷଣ ଯନ୍ତ୍ରରେ ଏହି ଗ୍ରହ ସବୁଜ ବର୍ଣ୍ଣର ଚକପରି ଦେଖାଯାଏ । ହେଲେ ଏହି ସବୁଜ ବର୍ଣ୍ଣ କୌଣସି ଗଛଲତାର ଉପସ୍ଥିତି ଯୋଗୁ ନୁହେଁ, ଏହାର ବାୟୁମଣ୍ଡଳରେ ଥିବା ମିଥେନ ଓ ଆମୋନିଆ ଯୋଗୁ ଏହି ସବୁଜ ବର୍ଣ୍ଣର ସୃଷ୍ଟି ବୋଲି ଆମ ଗବେଷକମାନେ ମତ ଦିଅନ୍ତି ।



- ''ଏବେ ଶୁଣୁ । ସେ ଗ୍ରହରେ ସୂର୍ଯ୍ୟ କିପରି ପଶ୍ଚିମରେ ଉଦୟ ହୁଅନ୍ତି । ଅନ୍ୟଗ୍ରହମାନେ ସୂର୍ଯ୍ୟଙ୍କ ଚାରିପଟେ ପଶ୍ଚିମରୁ ପୂର୍ବକୁ ଘୂରନ୍ତି । ଫଳରେ ଏହି ସବୁ ଗ୍ରହରେ

ଆମେ ସୂର୍ଯ୍ୟଙ୍କୁ ପୂର୍ବରେ ଉଦୟ ହୋଇ ପଶ୍ଚିମରେ ଅସ୍ତ ହେବାର ଦେଖୁ । ମାତ୍ର ୟୁରାନ୍‌ସ ଗ୍ରହ ଏମାନଙ୍କ ଠାରୁ ଅଲଗା । ଏହି ଗ୍ରହଟି ସୂର୍ଯ୍ୟଙ୍କ ଚାରିପଟେ ପୂର୍ବରୁ ପଶ୍ଚିମକୁ ଘୂରେ । ଫଳରେ ଏହି ଗ୍ରହରେ ସୂର୍ଯ୍ୟ ପଶ୍ଚିମରେ ଉଦୟ ହୋଇ ପୂର୍ବରେ ଅସ୍ତ ହୁଅନ୍ତି । ଏହାଛଡା ଆଉ ଏକ ବିସ୍ମୟ ଏହି ଗ୍ରହରେ ଦେଖାଯାଏ । ସବୁଗ୍ରହ ସୂର୍ଯ୍ୟ ଚାରିପଟେ ଘୂରିଲା ବେଳେ ସେମାନଙ୍କ ଅକ୍ଷ ପରିକ୍ରମଣ କକ୍ଷ ସହ ପ୍ରାୟ ନବେ ଡିଗ୍ରୀ କୋଣ ଅଙ୍କନ କରିଥାଏ । ହେଲେ ୟୁରାନ୍‌ସର ଅକ୍ଷ ତାର କକ୍ଷର ସମତଳ ସହ ପ୍ରାୟ ସମାନ୍ତର ଭାବେ ରହିଥାଏ । ତେଣୁ ଏହା ଘୂରିଲାବେଳେ ଓଲଟି ପଡିଥିବା ନଟୁ ପରି ଦେଖାଯାଏ ।''

ଚୁପ୍‌ଚାପ୍ ଏହି ବିଚିତ୍ର କଥାଟି ଶୁଣୁଥିବା ଲକି କହିଲା, ''ଏଇ ବିଚିତ୍ର ଗ୍ରହର ଦିନରାତି, ବର୍ଷ ଏସବୁ ବିଷୟରେ କିଛି କୁହ ଅପା ?''

-''ଏହି ଗ୍ରହଟି ନିଜ ଚାରିପଟେ ଘୂରିବାକୁ ଦଶଘଣ୍ଟା ଅଣଚାଶ ମିନିଟ ନିଏ । ଏହାର ଗୋଟିଏ ବର୍ଷ ଆମ ପୃଥିବୀର ଚଉରାଅଶୀ ବର୍ଷ ସହ ସମାନ । ଅର୍ଥାତ୍ ଏହା ସୂର୍ଯ୍ୟଙ୍କ ଚାରିପଟେ ଥରେ ଘୂରିବାକୁ ଚଉରାଅଶୀ ବର୍ଷ ନିଏ । ଆମର ପୃଥିବୀଠାରୁ ଏହା ଚାରିଗୁଣ ଭାରୀ । ମାତ୍ର ଏହାର ମାଧ୍ୟାକର୍ଷଣ ପୃଥିବୀର ମାଧ୍ୟାକର୍ଷଣ ଠାରୁ ଅଳ୍ପ କମ । ଏହାର ଆକାଶରେ ଦେଖାଦିଏ ସାତଗୋଟି ଚନ୍ଦ୍ର, ଅର୍ଥାତ୍ ଏହାର ସାତଗୋଟି ଉପଗ୍ରହ ଅଛି ।''

- ''ଏବେ ଏଇ ଗ୍ରହ ବିଷୟରେ ଆହୁରି ଏକ ମଜାକଥା ଶୁଣ୍ । ଏହି ଗ୍ରହ ନିଜ କକ୍ଷ ପଥରେ ଘୂରିଲା ବେଳେ ଏକ ବ୍ୟତିକ୍ରମ ପରିଲକ୍ଷିତ ହେଲା । ଫଳରେ ଜ୍ୟୋତିର୍ବିଦମାନଙ୍କର ସନ୍ଦେହ ହେଲା । ସେମାନେ ଅନୁମାନ କଲେ ଯେ ଏହି ଗ୍ରହ ନିକଟରେ ଆଉ ଏକ ଅଜଣା ଗ୍ରହ ଥାଇପାରେ ସେମାନେ ଅନୁସନ୍ଧାନରେ ଲାଗି ପଡିଲେ ।



ସେମାନଙ୍କ ଅନୁମାନ ସତ୍ୟ ହେଲା, ସେମାନେ ଦେଖିଲେ ଯେ ଏହି ଗ୍ରହଟି ନିକଟରେ ଥିବା ଆଉ ଏକ ଗ୍ରହର ମାଧ୍ୟାକର୍ଷଣ ଶକ୍ତି ଦ୍ୱାରା ଏହା ପ୍ରଭାବିତ ହେଉଛି । ଏହା ନିକଟରେ ଅବସ୍ଥିତ ଏହି ନୂତନ ଗ୍ରହଟି ହେଉଛି ନେପଚ୍ୟୁନ୍ ଗ୍ରହ । ଆଳୁ ଖୋଳୁ ଖୋଳୁ ମହାଦେବ ବାହାରିଲା ପରି ଏହି ଗ୍ରହର ଘୂର୍ଣ୍ଣନରୁ ନେପଚ୍ୟୁନ୍ ଗ୍ରହ ଆବିଷ୍କାର ହେଲା । ସୂର୍ଯ୍ୟ ପଶ୍ଚିମରେ ଉଦୟ ହେଉଥିବା ଏହି ଗ୍ରହଟି ବିଷୟରେ ତୁ ଏବେ ଅନେକ କଥା ଶୁଣିଲୁଣି ଲକି । ଆଜି ଏତିକି ଥାଉ ।



# ନିଦ ମାଉସୀର ସପନ ଦୋଳି

ପରୀକ୍ଷା ସମୟ । ସଞ୍ଜ ଗଡିଗଲା ପରେ ବିଜ୍ଞାନ ବହି ଖୋଲି ପଢ଼ି ବସିଲା ସିପୁନା । ଆଜି ଯେମିତି ହେଲେ ତାକୁ ଅଣୁ, ପରମାଣୁ ବିଷୟ ସାରିବାକୁ ପଡିବ । କାଲି ଏ ବିଷୟରେ ଏକ ମାସିକ ପରୀକ୍ଷା ଅଛି । ଦୁଇଟା ପୃଷ୍ଠା ପଢିଛି କି ନାହିଁ, ତାକୁ ନିଦ ମାଡ଼ି ଆସିଲା । ତା କୁନି କୁନି ଆଖିପତାମାନ ଭାରି ହୋଇ ଉଠିଲା । ମନେମନେ ସିପୁନା ନିଦ ମାଉସୀ ଉପରେ ବିରକ୍ତ ହୋଇ ଉଠିଲା । କେଉଁଠି ଏ ନିଦମାଉସୀ ଥାଏ କେଜାଣି, ଚୁପ୍‌ଚାପ୍ ଆସି ତା ଆଖିପତାକୁ ବୁଜିଦିଏ । ସେ ଶୋଇଯାଏ ନିସ୍ତେଜ ହୋଇ ।



ନିଦମାଉସୀ ହସି ହସି କହିଲା, ''ସିପୁନା, ମୁଁ ତ ସମସ୍ତଙ୍କ ପାଖକୁ ଏମିତି ଯାଏ । ଏ ଜଗତରେ ଯେତେ ପଶୁ, ପକ୍ଷୀ, ମଣିଷ ସମସ୍ତଙ୍କୁ ଏମିତି ମୋ କୋଳରେ ଶୁଆଇ ଦିଏ । ଜାଣିଛୁନା, ତୋ ପରି ପ୍ରତିଟି ମଣିଷ ତାଙ୍କ ଜୀବନର ତିନିଭାଗରୁ ଏକ ଭାଗ ଏମିତି ଶୋଇ ଶୋଇ କଟେଇ ଦିଅନ୍ତି ।

ସେମିତି ନିଦୁଆ ଆଖିରେ ସିପୁନା କହିଲା, ''ମିଛ କଥା । ଆମ କୁନି ଝିଅ ଜଲି ତ ସବୁବେଳେ ଚୁପ୍‌ଚାପ୍ ଶୋଇଥାଏ ।''

ନିଦମାଉସୀ କହିଲା, ''ହଁ, ଛୋଟପିଲାମାନେ ବହୁତ ଶୁଅନ୍ତି । ମାତ୍ର ବୟସ ବଢ଼ିଲେ ଲୋକଙ୍କ ଶୋଇବା କମିଯାଏ ।''

-"ସତକଥା ତ । ଆଉ କହୁଥିଲେ ତାଙ୍କୁ ରାତିରେ ଜମା ନିଦ ହେଉନାହିଁ ।

-"ଏମିତି କାହିଁକି ହୁଏ, ଜାଣିଛ ନା ?

ତୁମ ଶରୀର ଭିତରେ ଚାଲିଥିବା ଏକ ଜୈବିକ କ୍ରିୟା ଦିନରାତି ପ୍ରକ୍ରିୟା ସହ ସମତାଳରେ ଚାଲେ । ତେଣୁ ମୁଁ ଚୁପ୍‌କରି ଆସି ତୁମ ଆଖିପତାକୁ ମାଡିଦିଏ । ହେଲେ ଶୋଇକରି ଉଠିଲା ପରେ ତୁମେ ସତେଜତା ଅନୁଭବ କରେ । କୌଣସି କାମ କରିବାକୁ ଆଗ୍ରହ ପ୍ରକାଶ କର । ରାତିରେ ଭଲକରି ନିଦ ନହେଲେ ଦିନଟା ଭଲ ଲାଗେ ନାହିଁ । କାମ କରିବାକୁ ଇଚ୍ଛା ହୁଏ ନାହିଁ । ଧାରାବାହିକ ଭାବେ ଅନିଦ୍ରା ରହିଲେତ ତୁମେ ରୋଗରେ ପଡିଯିବ । କିଛି କାମ କରିପାରିବ ନାହିଁ । ଏଥିରୁ ଅନୁମାନ କର ମୋର କେତେ ଶକ୍ତି । ନିଦ ହିଁ ତୁମ ଦେହରେ କାମ କରିବାପାଇଁ ଶକ୍ତି ଆଣିଦିଏ ।

-"ହେଲା ଯେ, ମାତ୍ର ନିଦମାଉସୀ ମୁଁ ଯେତେବେଳେ ତୁମ କୋଳରେ ହଜିଯାଏ ନା ସେଠାରୁ ଚାଲିଯାଏ ସପନ ରାଇଜକୁ । କେତେ ମିଠା ମିଠା ସପନରେ ବୁଡିଯାଏ । ଏ ସପନ କେଉଁଠାରୁ ଆସେ ?"

-"ସପନ ତ ମୋର ଗୋଟିଏ ଅଂଶ । ତୁମେ ମୋ କୋଳରେ ଗାଢ ଭାବେ ଶୋଇ ପଡ଼ିଲା ପରେ ସପନ ଦୋଳିରେ ଝୁଲି ଝୁଲି ବୁଲୁଥାଅ । ଗୋଟିଏ ରାତିରେ ତମେ କେତେ ପ୍ରକାର ସପନ ଦେଖ ମନେ ପକାଇଲ ।"

-"ସତେତ କେତେବେଳେ ମୁଁ ସପନରେ ଦାଦାଙ୍କ ପାଖକୁ ଯାଇ ଆଗ୍ରାର ତାଜମହଲ ଦେଖେତ କେତେବେଳେ ଗାଁ ପିଲାଙ୍କ ସାଙ୍ଗେ ନଈ ପଠାରେ ଖେଳେ, ଭାରି ମଜାଲାଗେ । ସପନ ସିନା ତୁଟିଯାଏ, ମନତଳେ ସେ ଦୃଶ୍ୟଟା ଆଙ୍କି ହୋଇ ରହିଥାଏ ।"

-"ତମେ ଯେତେବେଳେ ଶୋଇଗଲେ ବି ସପନ ଚାଲିଆସେ । କିନ୍ତୁ ତୁମ ବୈଜ୍ଞାନିକମାନେ ସପନ କାହିଁକି ଆସେ ସେ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ତଥ୍ୟ ପାଇ ନାହାନ୍ତି । କେତେକ ବୈଜ୍ଞାନିକ ଜଣାଇଛନ୍ତି ଯେ ଏକ ପ୍ରକାର ନିଦ ଅବସ୍ଥାରେ ମଣିଷର ଚକ୍ଷୁ ଦୁଇଟି ଅତି ଦ୍ରୁତ ଭାବରେ ଚାଳିତ ହୁଏ । ଏହି ସମୟରେ ସେ ବହୁତ ସ୍ୱପ୍ନ ଦେଖୁଥାଏ । ଆଉ କେତେକ ବୈଜ୍ଞାନିକ କୁହନ୍ତି ଦିନ ସମୟରେ ଆମେ ଯେଉଁସବୁ କାମ କରୁ, ରାତିରେ ତାହାହିଁ ସପନରେ ଆସିଯାଏ । ତା' ଛଡ଼ା ଆମ ମନରେ କେତେ ଆଶା, କେତେ କଳ୍ପନା ଥାଏ । କେତେ ଲୋକଙ୍କ ସଂସ୍ପର୍ଶରେ ଆମେ ଆସିଥାଉ । ସେମାନଙ୍କର ବ୍ୟବହାର ଚାଲିଚଳନ ଆମ ମନରେ କିଛି ପ୍ରଭାବ ପକାଇଥାଏ । ଏସବୁ ହିଁ ରାତିରେ ସ୍ୱପ୍ନ ହୋଇ ଆସେ ।

ଆଉ କିଛି ଲୋକଙ୍କ ମନରେ ଅନେକ ଆଶା ଥାଏ । ତାହା ସବୁ ବାସ୍ତବରେ ପୂରଣ ହୋଇପାରେ ନାହିଁ । ମାତ୍ର ସପନରେ ସେମାନେ ଦେଖନ୍ତି ସେ ଆଶା ପୂରଣ ହୋଇଯାଇଛି ।

ଆମ ବୈଜ୍ଞାନିକମାନେ ମଧ ପ୍ରମାଣ କରିଛନ୍ତି ଯେ ଜନ୍ମ ପରେ ପରେ ପିଲାଟି ପ୍ରାୟ ବାଇଶ ଘଣ୍ଟା ଶୋଇ ରହେ । ସେଥିରୁ ସେ ଅଠର ଘଣ୍ଟା ସପନ ରାଇଜରେ ଭାସି ଭାସି ବୁଲୁଥାଏ । ତେଣୁ ସେ ନିଦରେ ଶୋଇ ରହି କେତେବେଳେ ହସିଦିଏ ତ, କେତେବେଳେ କାନ୍ଦି ଉଠେ । ବୟସ ଯେତେ ଯେତେ ବଢ଼େ ତୁମ ଶୋଇବାର ପରିମାଣ ସେତେ କମି କମି ଯାଏ । ଅର୍ଥାତ୍ ବୟସ ଶହେରୁ ବେଶୀ ହେଲେ ନିଦତ କମିଯାଏ, ସପନ ବି ଜମା ଆସେ ନାହିଁ ।''

ଆହୁରି ଗୋଟିଏ ମଜା କଥା ଜାଣିଛ ନା ? ବେଳେ ବେଳେ ସପନରେ ଅନେକ ପ୍ରକାର ସମସ୍ୟାର ସମାଧାନ ହୋଇଯାଏ । ଲେଖକମାନେ ତାଙ୍କ ଲେଖା ପାଇଁ ସପନରେ କିଛି ଖୋରାକ ପାଇଯାଆନ୍ତି । ତୁମ ମନସ୍ତତ୍ତ୍ୱବିଦ୍ ଫ୍ରଏଡ୍ କୁହନ୍ତି, ଭଲ ନିଦ ପାଇଁ ତୁମକୁ ଏମିତି ସପନ ଦୋଳିରେ ଝୁଲିବାକୁ ପଡ଼ିବ । ଭଲ ନିଦ ହେଲେ ତୁମ ଶରୀର ସୁସ୍ଥ ଓ ନୀରୋଗ ରହିବ । ଏତକ କଥା କହିସାରି ନିଦ ମାଉସୀ ସିପୁନାର ଆଖିରୁ ଉଭାଇ ଗଲା । ସିପୁନା ଧଡ଼ପଡ଼ ହୋଇ ଉଠିପଡ଼ି ବିଜ୍ଞାନ ବହିର ପୃଷ୍ଠା ପରେ ପୃଷ୍ଠା ଓଲଟାଇବାରେ ଲାଗିଲା ।



# ଚଢ଼େଇ ତା ବାଟ ଚିହ୍ନିଲା



ଝୁମୁଲିର ମାମୁ ଦିଲ୍ଲୀରେ ଚାକିରୀ କରିଛନ୍ତି । ସେ ମାଇଁ ଓ ପିଲାମାନଙ୍କ ସହ ଦିଲ୍ଲୀରେ ରୁହନ୍ତି । ମାଇଁ ହେଉଛନ୍ତି ପଞ୍ଜାବର ଝିଅ । ହେଲେ ସେ ଓଡ଼ିଶାକୁ ଖୁବ୍ ଭଲପାଆନ୍ତି । ଓଡ଼ିଶାର ବଣ, ପାହାଡ, ଝରଣା ତାକୁ ପ୍ରତିବର୍ଷ ଟାଣି ଆଣେ ଦିଲ୍ଲୀରୁ । ସେମାନେ ଆସିଲେ ଗାଁ'ରେ ଅଜା, ଆଈଙ୍କ ସହ କିଛିଦିନ କଟାନ୍ତି । ତା ସହ କିଛି ନା କିଛି ସୁନ୍ଦର ସୁନ୍ଦର ସ୍ଥାନ ବୁଲିଯାଆନ୍ତି । ଏଥର ସେମାନେ ଚିଲିକା ଯିବାକୁ ସ୍ଥିର କଲେ । ଗଲାବେଳେ ଝୁମୁଲିକୁ ସେମାନଙ୍କ ସହ ନେଇଗଲେ ।

ବାଟରେ ମାମୁ, ମାଇଁଙ୍କୁ କାଳିଜାଈର କରୁଣ କାହାଣୀ କହୁଥିଲେ ଓ ଚିଲିକା ମଝିରେ ଥିବା କାଳିଜାଈ ମନ୍ଦିର କଥା କହିଲେ । ଚିଲିକା ପାଖରେ କାର୍ ଅଟକିଲା । ମାଇଁ ଆଗଯାଇ କାଳିଜାଈ ମନ୍ଦିର ବୁଲିଆସିବାକୁ ମନକଲେ । ମାମୁ ପିଲାମାନଙ୍କ ସହ ମାଇଁଙ୍କୁ ଧରି ଏକ ଡଙ୍ଗାରେ କାଳିଜାଈ ମନ୍ଦିରକୁ ବାହାରିଲେ ।

ଚିଲିକାର ନୀଳ ଲହରୀମାଳାରେ ନାଚି ନାଚି ଚାଲିଥାଏ ସେମାନଙ୍କ ଡଙ୍ଗାଟି । ଚାରିପଟେ ଚିଲିକାର ଅକାତ ପାଣି ସୂର୍ଯ୍ୟଙ୍କ କିରଣରେ ଝଲସୁଥାଏ । ବାହାର ରାଜ୍ୟର ଝିଅ ମାଇଁ ଏ ସୁନ୍ଦର ଦୃଶ୍ୟ ଦେଖି ଓଡ଼ିଶା ରାଜ୍ୟକୁ ଖୁବ୍ ପ୍ରଶଂସା କରୁଥାଆନ୍ତି । ଛୋଟ ବଡ଼

ଢେଉମାନେ ଆସି ଡଙ୍ଗାରେ ମୁଣ୍ଡପିଟି ଫେରିଯାଆନ୍ତି । ଢେଉରେ ଦୋଳି ଖେଳୁଥାଆନ୍ତି କେତେ କିସମର ଚଢ଼େଇ । ଆଉ କେତେକ ଚଢ଼େଇ ଡେଣା ଦୋହଲାଇ ଉଡି ବୁଲୁଥାଆନ୍ତି ଚିଲିକା ବୁକୁରେ । ନାନା ରଙ୍ଗର ଓ ନାନା ପ୍ରକାରର ଚଢ଼େଇ ମାନଙ୍କର ମଧୁର କାକଳୀରେ ପୂରି ଉଠିଥାଏ ଚିଲିକାର ଅଞ୍ଚଳ ।

ଆଃ, କେତେ ଚଢ଼େଇ ! ଆନନ୍ଦରେ ତାଳିମାରି କହିଲା ରିକୁ । ରିକୁ ମାମୁଙ୍କର ବଡପୁଅ । ଦିଲ୍ଲୀରେ ଇଂରାଜୀ ମିଡ଼ିୟମ ସ୍କୁଲରେ ପାଠ ପଢ଼େ । ଝୁମୁଲିଠାରୁ ସାନ । ଏତେ ଗୁଡ଼ିଏ ଚଢ଼େଇ ଗୋଟିଏ ଜାଗାରେ ଦେଖି ସେ ବହୁତ ଖୁସି ହୋଇଗଲା ଓ ଝୁମୁଲିକୁ ହଲାଇ ଦେଇ କହିଲା, ''ଦେଖ୍ ଅପା ! କେତେ ଚଢ଼େଇ । ଚିଲିକା ହ୍ରଦ ତା' ହେଲେ ଏଇ ଚଢ଼େଇମାନଙ୍କ ଘର । ନା' ଅପା ?''

- ''ନାରେ ରିକୁ ! ଏମାନେ ସବୁ ବହୁ ଦୂରରୁ ଆସିଛନ୍ତି ଏଠାକୁ ।''

- ''ଦୂରରୁ ? କେତେ ଦୂରରୁ ଆସିଛନ୍ତି ଏମାନେ ? ଦିଲ୍ଲୀ ଠାରୁ ଆହୁରି ଦୂରରୁ ?''

- ''ହଁ, ଏମାନେ ସାଇବେରିଆ ପରି ଥଣ୍ଡା ଅଞ୍ଚଳରୁ ଆସିଛନ୍ତି । ଆମର ଏଠାରେ ଏବେବି ଶୀତ ପଡ଼ିନାହିଁ । ମାତ୍ର, ସେପଟେ ବହୁତ ଥଣ୍ଡା ପଡିଲାଣି । ତେଣୁ ସେମାନେ ଶୀତରୁ ରକ୍ଷା ପାଇବା ଲାଗି ଆମ ଭଳି ଗ୍ରୀଷ୍ମ ପ୍ରଧାନ ଅଞ୍ଚଳକୁ ଚାଲି ଆସନ୍ତି ।''



- ''ସାଇବେରିଆରୁ ? ବାବାରେ, କେତେ ବାଟ ଏମାନେ ଉଡି ଉଡି ଆସନ୍ତି । ଆଚ୍ଛା ଏମାନେ କ'ଣ ପ୍ରତି ବର୍ଷ ଆସନ୍ତି ?''

- ''ହଁ, ଶୀତ ଋତୁର ଆରମ୍ଭରେ ଏମାନେ ସାଇବେରିଆ ପରି ଥଣ୍ଡା ଅଞ୍ଚଳ ଛାଡ଼ି ଚିଲିକାରେ ପହଞ୍ଚିଯାଆନ୍ତି । ଶୀତ ସରିଲେ ଏମାନେ ପୁଣି ନିଜନିଜର ବସା ମାନଙ୍କୁ ଫେରିଯାଆନ୍ତି ।''

- ''ଆଶ୍ଚର୍ଯ୍ୟର କଥା ତ ? ଏମାନେ ଚିଲିକାରେ ପହଞ୍ଚନ୍ତି ପୁଣି ରହି ବସାକୁ ଫେରିଯାଆନ୍ତି ? ଆଚ୍ଛା ଏମାନେ ଏତେ ଦୂରରୁ ବାଟ ଚିହ୍ନି ଆସନ୍ତି କେମିତି ? ବାଟବଣା ହୋଇ ଯାଆନ୍ତି ନାହିଁ ?''

ସତକଥା ତ ? ଝୁମୁଲି ଭାବିଲା, ଏତେ ଟିକିଏ ଚଢ଼େଇ ସେମାନେ ବାଟ ଚିହ୍ନନ୍ତି କେମିତି ? ଏମିତିଆ ପ୍ରଶ୍ନଟିଏ ତା' ମୁଣ୍ଡରେ ପଶିନଥିଲା । ସେ ଏକଥା ମାଇଁଙ୍କୁ

ପଚାରିଦେଲା । ମାଇଁ ପରିବେଶ ବିଜ୍ଞାନରେ ଉଚ୍ଚଶିକ୍ଷା ଲାଭ କରି ଗବେଷଣା କରୁଛନ୍ତି । ସେ ଭଲଭାବେ ଓଡ଼ିଆ କହିପାରନ୍ତି ନାହିଁ । ହିନ୍ଦୀ ମିଶା ଓଡ଼ିଆରେ ସେ ପିଲାମାନଙ୍କୁ ପ୍ରଶ୍ନର ଉତ୍ତର ବୁଝାଇବାକୁ ଲାଗିଲେ । ବାସ୍ତବିକ୍ ପକ୍ଷୀମାନଙ୍କର ସ୍ଥାନାନ୍ତରିତ ହେବା ଏକ ଆଶ୍ଚର୍ଯ୍ୟ ଜନକ ଘଟଣା । ପ୍ରତିବର୍ଷ ଲକ୍ଷ ଲକ୍ଷ ପକ୍ଷୀ ସେମାନଙ୍କ ବସାରୁ ବାହାରି ଏକ ସଂକ୍ଷିପ୍ତ ପଥଦେଇ ଉତ୍ତର ଗୋଲାର୍ଦ୍ଧରୁ ଦକ୍ଷିଣଗୋଲାର୍ଦ୍ଧକୁ ଆସନ୍ତି । ସେମାନେ ପ୍ରାୟ ଆଠ ହଜାର କିଲୋମିଟରରୁ ଅଧିକ ବାଟ ଆସନ୍ତି ଓ ଠିକ୍ ଚିଲିକା, ହୀରାକୁଦ ପ୍ରଭୃତି ଜାଗାମାନଙ୍କରେ ପହଞ୍ଚି ଯାଆନ୍ତି ।

କଥା ମଝିରେ ରିକୁ କହିଲା, "ହେଲେ ମା' ! ସେମାନେ ଏତେ ବାଟ ଆସିଲା ଭିତରେ କେମିତି ଜାଣନ୍ତି କେଉଁ ଦିଗରେ ଚିଲିକା ପଡ଼ିବ ଓ କେଉଁଠି ବାଟ ଭାଙ୍ଗିବେ ଇତ୍ୟାଦି । ମଣିଷ ପରି ଠିକ୍ ଆସି ପହଞ୍ଚିଯାଆନ୍ତି ଠିକଣା ସ୍ଥାନରେ ? ପକ୍ଷୀର ଛୋଟିଆ ମୁଣ୍ଡରେ ଏତେ ସବୁ ଚିନ୍ତାପାଇଁ ଶକ୍ତି ଆସେ କୁଆଡୁ ?"

ମାଇଁ ଟିକିଏ ହସିଦେଲେ ଓ କହିଲେ, "ତୁ ସିନା ଆଜି ଏକଥା ଚିନ୍ତାକଲୁ । ହେଲେ ଚାଳିଶବର୍ଷ ଧରି ଏହାର କାରଣକୁ ଆମ ଦେଶର ବୈଜ୍ଞାନିକ ମାନେ ଗବେଷଣା କରୁଛନ୍ତି । ଏହା ଉପରେ ନାନା ପରୀକ୍ଷା ନିରୀକ୍ଷା ଚଲାଇଛନ୍ତି । ସେମାନେ ପକ୍ଷୀମାନଙ୍କର ଏହି ଦୂରଯାତ୍ରା ବିଷୟରେ କିଛି କିଛି କାରଣ ଜାଣି ପାରିଛନ୍ତି ମାତ୍ର ; ସମୁଦାୟ ସତ୍ୟ ଜାଣି ପାରିନାହାନ୍ତି । ବହୁଦିନ ଧରି ବିଶ୍ୱାସ କରାଯାଉଥିଲା ଯେ ପକ୍ଷୀମାନେ ନିର୍ଦ୍ଦିଷ୍ଟ ଭୂଭାଗ, ନିର୍ଦ୍ଦିଷ୍ଟ ନଦୀ, ପାର୍ବତ୍ୟ ଉପତ୍ୟକା ଏବଂ ଉପକୂଳବର୍ତ୍ତୀ ଅଞ୍ଚଳକୁ ଚିହ୍ନି ବୋଧହୁଏ ଠିକଣାବାଟ ପାଇ ଯାଉଛନ୍ତି । ପୁଣି ମନରେ ପ୍ରଶ୍ନ ଉଠିଲା କେତେକ ପକ୍ଷୀ ଅଛନ୍ତି ଯେଉଁମାନେ ସମୁଦ୍ରର ନୀଳ ଜଳରାଶି ଦେଇ ଆସୁଛନ୍ତି । ସେମାନେ ପୁଣି ବାଟ ପାଆନ୍ତି କେମିତି ... ?"

ଏତିକି ବେଳେ ମାମୁଁ କହିଲେ, "ହେଇ ଦେଖ, କାଳିଜାଈ ମନ୍ଦିର ଦେଖାଗଲାଣି ।"

ରିକୁ ଓ ଝୁମୁଲି ଏକାସାଙ୍ଗରେ କହି ଉଠିଲେ, ନାଇଁ ଆମେ ଆଗ ପକ୍ଷୀଙ୍କ କଥା ଶୁଣିସାରୁ ।

ପିଲାଙ୍କ ଆଗ୍ରହ ଦେଖି ମାଇଁ ଆରମ୍ଭ କଲେ, "ହଁ ଶୁଣ । କେତେକ ବୈଜ୍ଞାନିକ କୁହନ୍ତି ଯେ, ପକ୍ଷୀମାନଙ୍କ ଭିତରେ ଏକ ଦିଗନିର୍ଣ୍ଣୟଯନ୍ତ୍ର ପରି ପ୍ରକୃତିଦତ୍ତ ଜିନିଷ କାମକରେ । ଯାହା ଦ୍ୱାରାକି ସେମାନେ ବାଟ ଜାଣିପାରନ୍ତି । ୧୯୫୦ରେ ଜଣେ ଜର୍ମାନ ବୈଜ୍ଞାନିକ ଆବିଷ୍କାର କଲେ ଯେ ସୂର୍ଯ୍ୟଙ୍କ ସ୍ଥିତି ଅନୁଯାୟୀ ପକ୍ଷୀମାନଙ୍କର ଗତି ବଦଳାଇବା ପାଇଁ ଏକ ପ୍ରାକୃତିକ କ୍ଷମତା ରହିଛି ।

ରାତିରେ ଗତି କରୁଥିବା ପକ୍ଷୀମାନେ ତାରାମାନଙ୍କ ଅନୁଯାୟୀ ଗତି ବଦଳାନ୍ତି । ପୃଥିବୀର ଚୁମ୍ବକୀୟ କ୍ଷେତ୍ର ସମ୍ବନ୍ଧରେ ମଧ ସେମାନେ ଜାଣିପାରନ୍ତି । ସେମାନଙ୍କ ବସା ଯେଉଁଠାରେ ଥାଏ ସେ ସ୍ଥାନର ଚୁମ୍ବକୀୟ ଆକର୍ଷଣ ଠିକ୍ ମସ୍ତିଷ୍କରେ ଛାପି ହୋଇ ରହିଯାଇଥାଏ । ଫେରିଲାବେଳେ ସେମାନେ ସେହି ଅନୁଯାୟୀ ଫେରିଆସନ୍ତି ବସାକୁ । ପକ୍ଷୀତତ୍ତ୍ୱବିତ୍ ମାନେ ମତ ଦିଅନ୍ତି ଯେ ସେମାନେ କୌଣସି ପଥ ଚିହ୍ନିବା ପାଇଁ ଆମଠାରୁ ଅଧିକ ଶକ୍ତିର ଅଧିକାରୀ ଅଟନ୍ତି । ପ୍ରକୃତି ତାଙ୍କୁ ଏହି ସ୍ୱତନ୍ତ୍ର ଶକ୍ତି ଦେଇଛି । ଏହି ଶକ୍ତି ବଳରେ ସେମାନେ ଯେଉଁ ଯେଉଁ ବାଟଦେଇ ଏଠାକୁ ଆସିଥାଆନ୍ତି ପୁଣି ଫେରିଲାବେଳେ ସେହିବାଟ ତାଙ୍କର ମନେ ପଡ଼ିଯାଏ । ତେଣୁ ସେମାନେ ବାଟବଣା ନହୋଇ ତାଙ୍କର ବସାକୁ ଫେରିଯାଆନ୍ତି ।



- "ପ୍ରକୃତି ତ ବଡ଼ିଆ ଶକ୍ତି ଖଞ୍ଜି ଦେଇଛି ଏହି କୁନିକୁନି ଚଢ଼େଇ ମାନଙ୍କ ଦେହରେ ?" ଆଶ୍ଚର୍ଯ୍ୟ ହୋଇ କହିଲା ଝୁମୁଲି ।

- "ହଁ ଆଉ ଗୋଟିଏ କଥା ଶୁଣ । ଏମାନେ ଖୁବ୍ ଦୂରରୁ ଆସୁଥିବା ଶବ୍ଦ ଓ ଖୁବ୍ ଧୀର ଭାବରେ ଶୁଣାଯାଉଥିବା ଶବ୍ଦକୁ ମଧ ମଣିଷ ଅପେକ୍ଷା ଅଧିକ ଭାବରେ ଶୁଣିପାରନ୍ତି । ସମୁଦ୍ରର ଗର୍ଜନକୁ ସେମାନେ ବହୁକିଲୋମିଟର ଦୂରରୁ ଶୁଣି ପାରନ୍ତି । ଏହା ମଧ ସେମାନଙ୍କୁ ବାଟ ଚିହ୍ନିବାରେ ସାହାଯ୍ୟ କରେ । ଏହି ସବୁ କାରଣରୁ ସେମାନେ ଯିବାକୁ ଚାହୁଁଥିବା ହ୍ରଦ, ଜଙ୍ଗଲ ବା ଜଳାଶୟର ବାଟକୁ ଠିକ୍ ଚିହ୍ନିପାରନ୍ତି ।"

- "ଠିକ୍ କଥା ମା । ମୋଟ ଉପରେ ଏହି ସବୁ କଥା ଜାଣିବାପାଇଁ ପ୍ରକୃତି ଆମମାନଙ୍କ ଠାରୁ ଅଧିକ ଶକ୍ତି ତାଙ୍କ ଦେହରେ ଖଞ୍ଜି ଦେଇଛି ।" ରିକୁ କହିଲା ।

କଥା ସରି ସରି ଆସିଲା ବେଳକୁ ଡଙ୍ଗା କାଳିଜାଈ ମନ୍ଦିର ପାଖରେ ଲାଗିଲା । କାଳିଜାଈ ଠାକୁରାଣୀଙ୍କୁ ମୁଣ୍ଡିଆମାରି ସମସ୍ତେ ଡଙ୍ଗାରୁ ଓହ୍ଲାଇ ମନ୍ଦିରକୁ ଗଲେ ।

●●●

# ଲୁହା ଗୁଣ୍ଡର କରାମତି

ସେଦିନ ଥିଲା ରବିବାର । ଛୁଟିଦିନ । ସକାଳ ଜଳଖିଆ ଖାଇସାରି ଏକ ବିଜ୍ଞାନ ପତ୍ରିକା ହାତରେ ଧରି ପଢୁଥିଲା ବବ୍‌ଲିନ୍ । ଛୁଟି ହେଲେ ସେ ପାଠ ପଢାରୁ ସମୟ ବାହାର କରି ପତ୍ର ପତ୍ରିକା ମାନ ପଢେ । ଆଜିକାଲି ଯୁଗ ଆଗେଇଲାଣି । କେତେ ନୂଆ ନୂଆ କଥାମାନ ଆବିଷ୍କାର ହେଲାଣି । ଏସବୁ ପତ୍ର ପତ୍ରିକା ନ ପଢିଲେ ଆମେ ଜାଣିବା କେମିତି ।

ଗୋଟିଏ ନୂଆ କଥା ବାହାରିଛି । ଯେତେଥର ପଢିଲେ ବି ସେ କିଛି ବୁଝିପାରୁନାହିଁ । ସମ୍ବାଦଟି ହେଲା ନିଉଜଲାଣ୍ଡ ଜାତୀୟ ଗବେଷଣାଗାରର ବୈଜ୍ଞାନିକ ରବ୍ ମରଡକ୍ ଓ ତାଙ୍କ ସାଥୀମାନେ ପ୍ଲାଙ୍କଟନ ଥିବା ସ୍ଥାନରେ ଲୁହାଗୁଣ୍ଡ ବିଞ୍ଚି ପ୍ରମାଣ କରିଦେଲେ ଯେ ଏହାଦ୍ୱାରା ପ୍ଲାଙ୍କଟନଙ୍କ ସଂଖ୍ୟା ବଢୁଛି ଓ ଅଙ୍ଗାରକାମ୍ଳର ପରିମାଣ ମଧ କମୁଛି । ଏସବୁ ତା କୁନି ମୁଣ୍ଡରେ ଆଦୌ ପଶୁନାହିଁ । ଏତିକିବେଳେ ଭାଇ ଆସି ତା ପାଖରେ ବସି ପଡିଲେ । ସେ ବାହାରିଥିବା ସ୍ଥାନରେ ଚିହ୍ନ ଦେଇ ଭାଇଙ୍କୁ ଏହାକୁ ବୁଝାଇଦେବାକୁ କହିଲା । ଭାଇ ବବ୍‌ଲିନ୍ ହାତରୁ ପତ୍ରିକାଟି ନେଇ ପ୍ରକାଶ ପାଇଥିବା ସମ୍ବାଦଟି ଉପରେ ଆଖି ବୁଲେଇ ନେଲେ ଆଉ ପଚାରିଲେ, ''ଆଚ୍ଛା ଏଇ ପ୍ଲାଙ୍କଟନ ବିଷୟରେ ତୁ କିଛି ଜାଣିଚୁ କି ?''



- ''ହଁ, ସମୁଦ୍ରର ପୃଷ୍ଠଭାଗରେ ଓ ତାର ଅଳ୍ପ ତଳେ ଅନେକ ଛୋଟ ଛୋଟ ପ୍ରାଣୀ ଓ ଉଭିଦ ଭାସିବାର ଦେଖାଯାଏ । ଏମାନଙ୍କୁ କୁହାଯାଏ ପ୍ଲାଙ୍କଟନ । ସତରେ ଭାଇ ଆମର ଏ ମହାସାଗର ବଡ ବିଚିତ୍ର । କୂଳ ଠାରୁ ଆରମ୍ଭ କରି ତାର ଅତଳଗଭୀର ପର୍ଯ୍ୟନ୍ତ କେତେ ଯେ ଉଭିଦ, ପ୍ରାଣୀ ଅଛନ୍ତି ସେମାନଙ୍କୁ କେହି ଜାଣିପାରିବେ ନାହିଁ । ସେହି ସମସ୍ତ ପ୍ରାଣୀ ଓ ଉଭିଦମାନଙ୍କ ମଧ୍ୟରେ ଏହି

ପ୍ଲାଙ୍କଟନଙ୍କ ସଂଖ୍ୟା ହେଉଛି ସବୁଠାରୁ ଅଧିକ । ଏମାନେ କିନ୍ତୁ ଭାଇ ଦେଖିବାକୁ ଖୁବ୍ ଛୋଟ ଛୋଟ । ଏମାନେ ଏତେ ଛୋଟ ଯେ ଅଧିକାଂଶଙ୍କୁ ଆମେ ଅଣୁବୀକ୍ଷଣ ଯନ୍ତ୍ର ବିନା ଖାଲି ଆଖିରେ ଦେଖିପାରିବା ନାହିଁ ।''

- ''ତୁ ତାହେଲେ ପ୍ଲାଙ୍କଟନ୍ ବିଷୟରେ ଏତେ କଥା ଜାଣିଚୁ । ହେଲେ ଜାଣିଚୁ ନା ଏହି ଛୋଟିଆ ପ୍ଲାଙ୍କଟନ ଆମର କେତେ ବଡ କାମ କରିଦିଏ । ଏମାନଙ୍କର ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ ଶୋଷଣର କ୍ଷମତା ରହିଛି । ବର୍ତ୍ତମାନ ଅତ୍ୟଧିକ ଗଛ କଟା ଯୋଗୁ ବାୟୁମଣ୍ଡଳରେ ଅଙ୍ଗାରକାମ୍ଳର ପରିମାଣ ବଢି ବଢି ଚାଲିଛି । ଏହା ବଢିବା ସହ ଆମ ସବୁଜ ପୃଥିବୀ ପାଇଁ ଏକ ବଡ ବିପଦ ଡାକି ଆଣୁଛି । କାରଣ ଏହା ଏକ ବିଷାକ୍ତ ଗ୍ୟାସ । ଏହାର ପ୍ରକୃତି ହେଉଛି ତାପ ଶୋଷଣ କରି ଧରି ରଖିବା । ସେ ଏହିପରି ତାପକୁ ଧରି ରଖିବା ଯୋଗୁ ଦିନକୁ ଦିନ ଆମ ପୃଥିବୀର ତାପମାତ୍ରା ମଧ୍ୟ ବଢି ବଢି ଚାଲିଛି । ଖରାଦିନେ ଅସହ୍ୟ ଗରମ ହେଉଛି । ଏଥିପାଇଁ ସମସ୍ତେ ବ୍ୟତିବ୍ୟସ୍ତ ହୋଇ ପଡିଲେଣି । ଅଂଶୁଘାତ ଦେଖାଦେଇ ଅନେକ ଜୀବନ ହାନି ଘଟାଉଛି । ବର୍ତ୍ତମାନ ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ କମାଇବା ହିଁ ସମସ୍ତଙ୍କ ପାଇଁ ଚିନ୍ତାର କାରଣ ହୋଇଛି । ଏହି କାମଟିରେ ସାହାଯ୍ୟ କରୁଛି ଏହି ଛୋଟିଆ ପ୍ଲାଙ୍କଟନଟି ।''

- ''ତେବେ ଏହା କିପରି ଆମ ଦୃଷ୍ଟିକୁ ଆସିଲା ? ଏସବୁ ଶୁଣି ଶୁଣି ବବ୍‌ଲିନ୍ ଭାଇଙ୍କୁ ପଚାରି ବସିଲା ।

- ''ବୁଝାଇ ଦେଉଛି ରହ । ଏହା ପୂର୍ବରୁ ତୁ ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦେବୁ ?'' କହିଲେ ଭାଇ ।



- ''କି ପ୍ରଶ୍ନ ପଚାରୁନ ଭାଇ ।''

- ''କହିଲୁ ଆମର ସବୁ ମହାସାଗର ଭିତରେ ସବୁଠାରୁ ବଡ ମହାସାଗର କିଏ ?''

- ''ଏଇ ପ୍ରଶ୍ନ । ପ୍ରଶାନ୍ତ ମହାସାଗର ତ ସବୁଠାରୁ ବଡ ।''

- ''ଠିକ୍ କହିଲୁ । ତା ତଳକୁ ଆଟଲାଣ୍ଟିକ ମହାସାଗର ହେଉଛି ଦ୍ୱିତୀୟ ବୃହତ୍ତମ ମହାସାଗର । ଆମ ବୈଜ୍ଞାନିକମାନେ କୁହନ୍ତି ଯେ ଏହା ଭିତରକୁ ସବୁଠାରୁ ବେଶୀ ପାଣି ଆସେ । ଏହା ଉପରେ ଆମ ବୈଜ୍ଞାନିକମାନେ ସବୁବେଳେ ଗବେଷଣା ଚଳାଇଛନ୍ତି । ଗବେଷଣା କରୁ କରୁ ସେମାନେ ଅନେକ ନୂଆ ଜିନିଷ ପାଇ ଯାଆନ୍ତି ।''

- ''ଆଟଲାଣ୍ଟିକ ମହାସାଗରର ଅଗ୍ର ତଳେ ଯେଉଁ ଉଦ୍ଭିଦ ପ୍ଲାଙ୍କଟନ ଅଛନ୍ତି ସେମାନଙ୍କୁ ନେଇ ନିଉଜଲାଣ୍ଡର ଏକ ଗବେଷଣାକାରୀଦଳ ଗବେଷଣା କରୁଥିଲେ । ଉଣେଇଶ ବର୍ଗମାଇଲ ପରିମିତ ସମୁଦ୍ର ଜଳରେ ଏମାନେ ଏକମାସ ଧରି ଏହି ଗବେଷଣା କଲେ । ସେମାନେ ସେହି ଅଞ୍ଚଳର ସମୁଦ୍ର ଜଳରେ କିଛି ଲୁହାଗୁଣ୍ଡ ବିଞ୍ଚି ଦେଲେ ଏବଂ ପ୍ରମାଣ କରି ଦେଲେ ଯେ ଲୁହାଗୁଣ୍ଡ ବିଞ୍ଚିବା ଦ୍ୱାରା ସମୁଦ୍ର ଜଳରେ ପ୍ଲାଙ୍କଟନ ସଂଖ୍ୟା ଆଶାତୀତ ଭାବେ ବଢିଯାଉଛି । ଖାଲି ସେମାନଙ୍କର ସଂଖ୍ୟା ବଢୁନାହିଁ, ସେମାନଙ୍କର ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ ଶୋଷଣ କ୍ଷମତା ମଧ୍ୟ ବଢୁଛି । ଏହାଦ୍ୱାରା ବାୟୁମଣ୍ଡଳ ବିଷାକ୍ତ ଅଙ୍ଗାରକାମ୍ଳ ଗ୍ୟାସ୍ କବଳରୁ ରକ୍ଷା ପାଇବ । ଖାଲି ଏତିକି ନୁହେଁ, ଏମାନେ ଛାଡୁଥିବା ପ୍ରଚୁର ପରିମାଣରେ ଗ୍ୟାସ୍ ମେଘ ସୃଷ୍ଟିରେ ମଧ୍ୟ ସାହାଯ୍ୟ କରୁଛି । ସମୁଦ୍ରରେ ଥିବା ଅନ୍ୟ ପ୍ରାଣୀ ଓ ଉଦ୍ଭିଦମାନେ ଏମାନଙ୍କୁ ଖାଦ୍ୟ ଆକାରରେ ବ୍ୟବହାର କରନ୍ତି । ତେଣୁ ବୈଜ୍ଞାନିକମାନେ ଗବେଷଣା କରି ଏମାନଙ୍କ ସଂଖ୍ୟା ବଢାଇବାରେ ବାଟ ଦେଖାଇବା ବାସ୍ତବିକ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ।'' ଏବେ ତୁ ବୁଝିପାରିଲୁ ତ ସବୁକଥା ।''

ଭାଇଙ୍କ କଥା ଶୁଣି ବବ୍‌ଲିନ୍ ଭାବିଲା, ''ସତରେ ଆମର ଏ ପୃଥିବୀ କେତେ ସୁନ୍ଦର ଆଉ ବିଚିତ୍ର । ମାଟି, ପାଣି, ପବନକୁ ନେଇ ଗଢା ଆମର ବିଶାଳ ପୃଥିବୀ । ମାଟି ଅପେକ୍ଷା ପାଣି ହିଁ ବେଶୀ ସ୍ଥାନ ଅଧିକାର କରିଛି ଏଠାରେ । ଏହି ପାଣିର ମୁଖ୍ୟ ଆଧାର ହେଉଛି ସାଗର ଓ ମହାସାଗର । କି ବିରାଟ ଏହି ମହାସାଗରମାନ । ଅନେଇଲେ ଆଖି ପାଏ ନାହିଁ । ଯୁଆଡେ ଚାହିଁବ ଖାଲି ପାଣି ଆଉ ପାଣି । ଏହି ମହାସାଗରର ପାଣି ଭିତରେ ଏତେ ନୂଆ କଥା ଲୁଚି ରହିଛି ସତରେ ସେ ଜାଣି ଆଶ୍ଚର୍ଯ୍ୟ ହେଲା ।



